ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ଡିସେମ୍ବର, ୨୦୧୬ ସଂସ୍କରଣ

୫

କଳାଧନ

ପ୍ରଥମାଷ୍ଟମୀ

କବିତା ଗୁଚ୍ଛ

ଜୀବନ ସଳିତା

ମୁଁ, ମାଆ ଓ ଗାଁ

ପାଞ୍ଚୋଟି ଏକପଦୀ

ଆଉ ମୁଁ ଗୀତ ଗାଏନି

ମିଛେଇ ଝିଅର ପ୍ରେମ

ପ୍ରତୀକ୍ଷା, ଏ ଶବରୀର



## ମୁଁ ନୁହେଁ ସୀତା

## ଆମ ଗାଁ ହାଲଚାଲ

## ଉଦ୍ୟାନମ୍ - ମଧ୍ୟ କଳିଙ୍ଗର ମୂକସାକ୍ଷୀ

ଇଂରେଜୀ
ନବବର୍ଷ ୨୦୧୭ ଶୁଭେଚ୍ଛା

# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା

ପ୍ରତିଷ୍ଠାତା - ସମ୍ପାଦକ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡ଼ି.ଏମ୍.ସି.ଏଚ୍., ପି.ଜି.ଡ଼ି.ଏଚ୍.ଏମ୍.

ବୀମା ନଗର, ଦ୍ୱିତୀୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା
ଦୂରଭାଷ - ୯୦୪୦୯୮୫୪୬୩, ଇମେଲ୍ - aahwaan@gmail.com

'ଆହ୍ୱାନ'ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖା ଗୁଡ଼ିକୁ ହିଁ ଲେଖାର ମାନ ଏବଂ ଭାଷା ତଥା ଉପାଦେୟତା ଆଧାରରେ ଚୟନ କରାଯାଇଥାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ, ଯେତେବେଳ ଯାଏଁ କୌଣସି ସୂଚନା ବା ନିର୍ଦ୍ଦେଶ ଦିଆଯାଇନାହିଁ । ଲେଖାରେ ଦିଆଯାଇଥିବା ବିଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତ ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ସମ୍ପାଦକ ସବୁ ଲେଖାକୁ ଭଲ ଭାବରେ ପଢ଼ନ୍ତି ଏବଂ ବୁଝିବା ପରେ ହିଁ ପ୍ରକାଶିତ କରିଥାନ୍ତି । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ରହିବ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦି)ରେ ପ୍ରକାଶିତ କରିବା ଏକ ଅପରାଧ । ଦୟାକରି ଏହି ବିଷୟ ପ୍ରତି ବିଶେଷଧ୍ୟାନ ଦେବେ । ଲେଖକମାନେ ଚାହିଁଲେ ନିଜ ଲେଖାର ପ୍ରସାର ଓ ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କର ପ୍ରତିଛବି ଗଣମାଧ୍ୟମ ବା ଇଣ୍ଟରନେଟରେ ଦେଇପାରିବେ । ଏଠାରେ ଆମେ ଅନୁରୋଧ କରିବୁ ଯେ ଯେବେ ମଧ୍ୟ ଆପଣ ପତ୍ରିକାର କୌଣସି ଅଂଶ ଇଣ୍ଟରନେଟ / ଫେସବୁକ / ଟ୍ୱିଟରରେ ପ୍ରସାର କରୁଛନ୍ତି, ଦୟାକରି ଆମ ପତ୍ରିକାର ୱେବ୍‌ସାଇଟର ନାଁ (www.aahwaan.com) ଉଲ୍ଲେଖ କରିବାକୁ ଭୁଲିବେ ନାହିଁ ।

# ସୂଚୀପତ୍ର

# ସମ୍ପାଦକଙ୍କ ଲେଖନୀରୁ



## ଆମ୍ମା ଚାଲିଗଲେ

ଭାରତର ଦକ୍ଷିଣତମ ରାଜ୍ୟ ତାମିଲନାଡୁର ଲୋକପ୍ରିୟ ନେତ୍ରୀ ତଥା ମୁଖ୍ୟମନ୍ତ୍ରୀ ସୁଶ୍ରୀ ଜୟଲଳିତା ଦୀର୍ଘ ୭୫ ଦିନର ଅସୁସ୍ଥତାପରେ ଇହଧାମ ତ୍ୟାଗ କରିଛନ୍ତି । ସିନେମାରେ ଅଭିନୟରୁ ନିଜ ଜୀବନ ଆରମ୍ଭ କରିଥିବା ଆମ୍ମା ପରବର୍ତ୍ତୀ ସମୟରେ ରାଜ୍ୟର ସବୁଠାରୁ ଲୋକପ୍ରିୟ ନେତ୍ରୀ ଭାବରେ ପରିଗଣିତ ହୋଇଥିଲେ । ସିନେମାରେ ଅଭିନୟ କରୁଥିବା ସମୟରେ ହିଁ ସେ ସେହି ସମୟର ଲୋକପ୍ରିୟ ଅଭିନେତା ଏମ୍ ଜି ରାମଚନ୍ଦ୍ରନଙ୍କ ସଂସ୍ପର୍ଶରେ ଆସିଥିଲେ, ପରେ ପରେ ଏମ୍‌ଜିଆର୍ ରାଜନୀତିରେ ଅଂଶଗ୍ରହଣ କରିବାପରେ ଆମ୍ମା ମଧ୍ୟ ରାଜନୀତିକୁ ଆପଣେଇଥିଲେ । ଅଲ୍ ଇଣ୍ଡିଆ ଆନ୍ନା ଦ୍ରାବିଡ଼ ମୁନ୍ନେତ୍ର କଝଗଂ (AIADMK), ଭାରତର ଦ୍ୱିତୀୟ ଆଞ୍ଚଳିକ ପାର୍ଟି ଏବଂ ଚଳିତ ଲୋକସଭାରେ ତୃତୀୟ ସର୍ବାଧିକ ସ୍ଥାନ (୩୭) ପାଇଥିବା ପାର୍ଟିର ସେ ଥିଲେ ସର୍ବେସର୍ବା । ତାଙ୍କର ନିଧନପରେ ସେହି ଦଳକୁ ପରିଚାଳନା କରିବା ପାଇଁ ସେହି ପ୍ରକାରର ଜଣେ ବ୍ୟକ୍ତିତ୍ୱ ହୁଏତ ଅନେକ ବର୍ଷ ଯାଏଁ ମିଳିବ ନାହିଁ ।

ଏମ୍ ଜି ରାମଚନ୍ଦ୍ରନଙ୍କ ନିଧନ ପରେ ତିନିବର୍ଷ ସମୟ ଦଳୀୟ ଅସ୍ଥିରତା ସତ୍ତ୍ୱେ ୧୯୯୧ ମସିହାରେ ସେ ତାମିଲନାଡୁର ମୁଖ୍ୟମନ୍ତ୍ରୀ ଭାବରେ ନିର୍ବାଚିତ ହୋଇଥିଲେ । ସେ ସର୍ବମୋଟ ଛଅଥର ତାମିଲନାଡୁର ମୁଖ୍ୟମନ୍ତ୍ରୀ ଭାବରେ ଶପଥଗ୍ରହଣ କରିଥିଲେ ଏବଂ ୧୫ ବର୍ଷରୁ ଅଧିକ ସମୟ ରାଜୁତି କରିଥିଲେ ।

ତାଙ୍କର ଶାସନ କାଳରେ ସାମାଜିକ ଉନ୍ନତମୂଳକ କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଥିଲା, ଯାହା ପରବର୍ତ୍ତୀ ସମୟରେ ଅନେକ ରାଜ୍ୟ ଅନୁସରଣ କରିଥିଲେ । ସେ ମୁଖ୍ୟମନ୍ତ୍ରୀ ଥିବା ସମୟରେ ମାସିକ କେବଳ ଏକ ଟଙ୍କା ନିଜର ପାଉଣା ହିସାବରେ ନେଇ ଏକ ଉଦାହରଣ ସୃଷ୍ଟି କରିଥିଲେ ।

ଅନାଥ ଶିଶୁଙ୍କ ପାଇଁ କାର୍ଯ୍ୟକ୍ରମ 'କ୍ରାଡ଼ଲ୍ ବେବୀ' ସମେତ ସରକାରୀ ଫାର୍ମାସୀ, ଔଷଧ ବିତରଣ ବ୍ୟବସ୍ଥା, ଆମ୍ମ କ୍ୟାଣ୍ଟିନ୍, ଆମ୍ମା ଷ୍ଟୋର୍ ଏମିତି ଅନେକ ଯୋଜନା ସେ କାର୍ଯ୍ୟକାରୀ କରାଇଥିଲେ । ନିଜର ରାଜନୈତିକ ଜୀବନରେ ସେ ଅନେକ ଉତ୍ଥାନ ପତନ ଦେଖିଥିଲେ । ଦୁଇଦୁଇଥର ଜେଲ ଭୋଗିଥିଲେ । ୧୯୯୭ ମସିହାରେ ଭ୍ରଷ୍ଟାଚାର ଅଭିଯୋଗରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ କରୁଣାନିଧିଙ୍କ ନିର୍ଦ୍ଦେଶରେ ସେ ଜେଲ ଦଣ୍ଡ ଭୋଗିଥିଲେ । ଏହାର ପ୍ରତିଶୋଧ ସେ ୨୦୦୧ ମସିହାରେ ମୁଖ୍ୟମନ୍ତ୍ରୀ ଥିବା ସମୟରେ ଅଶିବର୍ଷ ବୟସ୍କ କରୁଣାନିଧିଙ୍କୁ ନିଜ ବାସଭବନରୁ ଗିରଫ କରାଇ ନେଇଥିଲେ । ଦ୍ୱିତୀୟ ଥର ସେ ୨୦୧୪ ମସିହାରେ ସମ୍ପତ୍ତି ମାମଲାରେ ଜେଲ ଭୋଗିଥିଲେ । ସେତେବେଳେ ତିନିମାସ ପାଇଁ ତାଙ୍କୁ ଜେଲ ଦଣ୍ଡ ହୋଇଥିଲା ଯେତେବେଳେ ସେ ମଧୁମେହ ଓ ଗଣ୍ଠିବାତ ରୋଗ ଯୋଗୁଁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥିଲେ ।

ନିଜ ଜୀବନକାଳରେ ସେ ଅନେକ କଠିନ ପଦକ୍ଷେପ ନେଇଥିଲେ ଏବଂ ଲୋକପ୍ରିୟ ହୋଇଥିଲେ । ବିଗତ ତିନିମାସ ସେ ସ୍ୱାସ୍ଥ୍ୟ ଅବସ୍ଥା ଦୁର୍ବଳ ହେତୁ ଚିକିତ୍ସାଧୀନ ଥିଲେ । ଶେଷ ସମୟରେ ତାଙ୍କର ହୃଦ୍‌ଘାତ ହୋଇଥିଲା ଏବଂ ଅନେକ ବରିଷ୍ଠ ଚିକିତ୍ସକଙ୍କ ଶତପ୍ରଚେଷ୍ଟା ସତ୍ତ୍ୱେ ସେ ଇହଧାମ ତ୍ୟାଗ କରିଥିଲେ ।

### ମୋଦୀଙ୍କ ମାଷ୍ଟର୍ ଷ୍ଟ୍ରୋକ୍

ବିଗତ ଆଠତାରିଖ ସଂଧ୍ୟାରେ ଭାରତର ସବୁ ଇଲେକ୍ଟ୍ରୋନିକ୍

ଗଣମାଧ୍ୟମରେ ହଠାତ୍ ଦେଖାଦେଇ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ଦାମୋଦର୍ ଦାସ ମୋଦୀ, ଯାହା ଘୋଷଣା କରଲେ, ତାହା ଶୁଣିଲା ପରେ ଅନେକ ଘରେ ଆତଙ୍କର ବାତାବରଣ ଖେଳଗଲା । ଦେଖୁ ଦେଖୁ ଘୋଷଣାଟା ଫେସବୁକ୍, ଟ୍ୱିଟର୍ ଓ ହ୍ୱାଟ୍ସଆପ୍ ରେ ମଧ ବହୁଳ ଭାବରେ ପ୍ରସାରତ ହେବାକୁ ଲାଗିଲା । ମାତ୍ର କେଇ ଘଣ୍ଟା ମଧରେ ଲାଗିଲା ସତେ ଯେମିତ ଭାରତରେ ଏକ ଅପ୍ରତ୍ୟାଶିତ ବପ୍ଳବର ଆରମ୍ଭ ହୋଇଗଲା । ଗଣମାଧ୍ୟମମାନେ ଏହ ସମାଗ୍ଭରକୁ ନେଇ ଘନ ଘନ ପରଚର୍ଚ୍ଚାମାନ ପ୍ରକାଶିତ କରବାକୁ ଲାଗିଲେ । ସେହଦନ ମଧରତ୍ରରୁ ଭାରତରେ ୫୦୦ ଏବଂ ୧୦୦୦ ଟଙ୍କାର ସମସ୍ତ ମୁଦ୍ରାକୁ ଅଚଳ କରଦେବାର ଘୋଷଣା ସତେ ଯେମିତ ମହାବାତ୍ୟା ପର ଲାଗିଲା । ଏହାପରେ ଦୁଇଦନ ବ୍ୟାଙ୍କ୍ ବନ୍ଦ ରହବ ଏବଂ ଏଟିଏମ୍‌ରୁ ମଧ ଟଙ୍କା ବାହାରବନାହିଁ ବୋଲ ଶୁଣି ଅନେକ ଲୋକ ରାତ ଅଧରେ ଘରୁ ବାହାରଥିଲେ । କଛ ଲୋକ ରଖିଥିବା ଟଙ୍କାକୁ ନେଇ ସେଥିରେ ସୁନା କିଣିଥିବା କଥା ବ ଶୁଣାଗଲା ।

କଳାଧନ ବାବଦରେ ସବୁବେଳେ ଚର୍ଚ୍ଚାରେ ରହ ଆସିଥିବା ନରେନ୍ଦ୍ରମୋଦୀ ସରକାରଙ୍କ ଏହ ପଦକ୍ଷେପ ଫଳରେ ଦେଶ ଭତରେ ସଞ୍ଚିଥିବା ସମସ୍ତ କଳାଧନ ହଠାତ୍ ରାତାରାତ ପ୍ରଘଟ ହୋଇଯିବାର ଭୟ ସମସ୍ତଙ୍କୁ ଏବେ ଘାରଛ । ସୂଚନାଯୋଗ୍ୟ ଯେ ଅନେକ ବ୍ୟକ୍ତି ନଜର କଳାଧନକୁ ପ୍ରାୟତଃ ୫୦୦ ଏବଂ ୧୦୦୦ ଟଙ୍କା ନୋଟରେ ଘରେ ରଖିଥାନ୍ତି । କୌଣସି ପ୍ରକାର କଳାକାରବାର ସମୟରେ ପ୍ରାୟତଃ ଏହ ସବୁ ମୁଦ୍ରାର ବ୍ୟବହାର ହୁଏ । ଘର କିଣିବା ସମୟରେ ହେଉ ଅବା ବେସରକାରୀ ଶିକ୍ଷାନୁଷ୍ଠାନ ମାନଙ୍କରେ ହେଉ, ସବୁଠି କ୍ୟାପିଟେସନ୍ ଫି ଆଉ ଅନ୍ୟାନ୍ୟ ଫି ବାବଦରେ ଲକ୍ଷ ଲକ୍ଷ ଟଙ୍କା ସଂଗ୍ରହ କରଯାଏ, ଯାହାର ରସିଦ ଦଆଯାଏ ନାହିଁ । ଏହ ନୂଆ ବ୍ୟବସ୍ଥା ଫଳରେ ସେହ ସବୁ ବ୍ୟକ୍ତିମାନେ

ଏବେ ହରଡ଼ଘଣାରେ ପଡ଼ି ଯାଇଛନ୍ତି । ନିଜ ଘର ଆଲମିରାରେ ରଖିଥିବା ଲକ୍ଷ ଲକ୍ଷ ଅବା କୋଟି କୋଟି ଟଙ୍କା ଏବେ ସେମାନେ ବଦଳାଇବାକୁ ବାଧ୍ୟ ହେବେ । ଏବଂ ବଦଳାଇବା ସମୟରେ ସେମାନେ ଜଣାଇବେ ଏତେ ଟଙ୍କା ସେମାନେ କୋଉଠୁ ପାଇଲେ ? ଯଦି ସେହି ଟଙ୍କାର ସ୍ରୋତ ବିଷୟରେ ଜଣା ପଡ଼ୁନାହିଁ, ତେବେ ତାକୁ କଳାଧନ ବୋଲି ଧରିନିଆଯିବ ଏବଂ ସରକାର ସେହି ଟଙ୍କାର ଷାଠିଏ ପ୍ରତିଶତ ନେଇଯିବେ । ଦରକାର ହେଲେ କିଛି ଲୋକଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ମଧ୍ୟ ନିଆଯାଇପାରେ ।

ସୂଚନାଯୋଗ୍ୟ ଯେ ଚଳିତ ବର୍ଷ ଆରମ୍ଭରୁ କେନ୍ଦ୍ର ସରକାର କଳାଧନ ଘୋଷଣା କରିବା ପାଇଁ ସ୍କିମ୍ ପ୍ରଚଳନ କରି ସେପ୍ଟେମ୍ବର ୩୦ ତାରିଖ ସୁଦ୍ଧା ନିଜ ସଞ୍ଚିତ କଳାଧନ ବା ସମ୍ପତ୍ତି ବାବଦରେ ଘୋଷଣା କରିଲେ ୪୫% ଦେୟ ଦେଇ ବାକି ଟଙ୍କା ରଖିପାରିବା ଭଳି ବ୍ୟବସ୍ଥା ଆଣିଥିଲେ । ଏହା ଦ୍ୱାରା ପାଖାପାଖି ୬୨ ହଜାର କୋଟି ଟଙ୍କା ଆଦାୟ ହୋଇଥିଲା । ସେତେବେଳେ ସରକାର ଚେତେଇ ଦେଇଥିଲେ ଯେ, ଯେଉଁମାନେ ନିଜ ସଞ୍ଚିତ କଳାଧନର ଘୋଷଣା କରୁନାହାନ୍ତି ସେମାନେ ଭବିଷ୍ୟତରେ ବହୁତ ଅସୁବିଧାର ସମ୍ମୁଖୀନ ହେବେ । ଏବେ ସରକାରଙ୍କ ଏହି ଘୋଷଣା ସେହି ବ୍ୟକ୍ତିମାନଙ୍କ ପାଇଁ ପ୍ରଯୁଜ୍ୟ ବୋଲି ଜଣାପଡ଼ିଛି ।

ଧନ ସଞ୍ଚୟ କରିବା ଅନୁଚିତ ନୁହେଁ, କିନ୍ତୁ କଳାଧନକୁ ସରକାରଙ୍କ ଅଗୋଚରରେ ଲୁଚେଇ ରଖିବା ଏକ ଅପରାଧ । ଅନେକ ବ୍ୟକ୍ତି ନିଜ ଧନକୁ ବ୍ୟାଙ୍କରେ ରଖନ୍ତି ନାହିଁ, କାରଣ ସେମିତି କରିଲେ ସେମାନଙ୍କର ଆୟବହିର୍ଭୂତ ଧନର ଖବର ସରକାରଙ୍କୁ ଜଣାପଡ଼ିଯିବ । ଏବଂ ଅଧିକ କର ଦେବାକୁ ପଡ଼ିବ । ଏବେ ସେମାନେ ଜାଣିପାରିବେ ଯେ ଏହାଦ୍ୱାରା ଦେଶର କେତେ କ୍ଷତି ସେମାନେ

କରୁଥିଲେ । ଅବଶ୍ୟ ପରିବାରରେ ସ୍ତ୍ରୀ ଲୋକମାନେ, ଗରୀବ ଗୃଷୀମାନେ ଏବଂ ବ୍ୟବସାୟୀମାନେ କିଛି କିଛି ଟଙ୍କା ଘରେ ଲୁଚେଇ ରଖିବାର ସମସ୍ତେ ଜାଣନ୍ତି, ସେମାନଙ୍କ ପାଇଁ କୌଣସି ଅସୁବିଧା ହେବନାହିଁ, ବୋଲି ସରକାର ଘୋଷଣା କରିଛନ୍ତି । ଅଢ଼େଇ ଲକ୍ଷରୁ ଅଧିକ ଟଙ୍କା ଗଚ୍ଛିତ କରି ରଖିଥିବା ବ୍ୟକ୍ତିମାନଙ୍କୁ ସେହି ବାବଦରେ ଉତ୍ତର ଦେବାକୁ ହେବ । ଏହାପରେ ଆୟକର ବିଭାଗ ସେହି ଧନ ବିଷୟରେ ପୁଙ୍ଖାନୁପୁଙ୍ଖ ତଦନ୍ତ କରିବେ ଏବଂ ସନ୍ତୋଷଜନକ ଉତ୍ତର ନ ମିଳିଲେ, ସେମାନେ ଏହି ଟଙ୍କାରୁ ଷାଠିଏ ପ୍ରତିଶତ ଭାଗ ଜୋରିମାନା ଆକାରରେ ରଖିନେବେ ।

ଦେଶରେ ହେଉଥିବା ଦେଣନେଣର ପ୍ରାୟ ୮୮ ପ୍ରତିଶତ କେବଳ ୫୦୦ ଏବଂ ୧୦୦୦ ଟଙ୍କା ନୋଟ ଦ୍ୱାରା ହେଉଥିବା କଥା ସରକାର ଜଣାଇଛନ୍ତି । ଏହି ସବୁ ଦେଣନେଣ ପ୍ରକ୍ରିୟା ବ୍ୟାଙ୍କ ମାଧ୍ୟମରେ ହେଲେ, କୌଣସି ପ୍ରକାର କଳାକାରବାର ହୋଇପାରିବ ନାହିଁ । ଏହି ସବୁ ମୁଦ୍ରା ବଜାରରୁ ବାହାର କରିନେଇ ନୂଆ ମୁଦ୍ରା ପ୍ରଚଳନ କରାଯିବ । ଏହାଦ୍ୱାରା କଳାଧନ ବ୍ୟବହାରକୁ ବନ୍ଦ କରିହେବ । ଅବଶ୍ୟ କଳାବ୍ୟାପାରୀମାନେ ଏହାକୁ ଦେଖି ନୂଆ ନୂଆ ବ୍ୟବସ୍ଥା କରିବେ ସତ, କିନ୍ତୁ ଏହି ଘୋଷଣା ପରେ ଅନ୍ତତଃ ଅନେକ କଳାବ୍ୟାପାରୀଙ୍କ ମୁଖା ଖୋଲିଯିବ ସେଥିରେ ଦ୍ୱିମତ ନାହିଁ । ଭବିଷ୍ୟତରେ କେହି ବ୍ୟକ୍ତି କୌଣସି ସ୍ଥାନରେ ଗଚ୍ଛିତ କରି ଟଙ୍କା ରଖିଲେ ସେଥିପାଇଁ ସେ ଉତ୍ତରଦାୟୀ ହୋଇ ରହିବେ । ସରକାର ଗୃହୁଁଛନ୍ତି ଦେଶର ସମସ୍ତ ଧନ ବ୍ୟାଙ୍କ ମାନଙ୍କରେ ଜମା ହୋଇ ରହୁ । ଏହାଦ୍ୱାରା ସମାଜରେ ଏକ ସାମାଜିକ ଦାୟିତ୍ୱବୋଧ ରହିବ ଏବଂ କଳାକାରବାରକୁ ପ୍ରୋତ୍ସାହନ ମିଳିବ ନାହିଁ ।

ରିୟଲ୍ ଇଷ୍ଟେଟ୍ ବା ଗୃହନିର୍ମାଣ ସଂସ୍ଥାମାନେ ମନ ଇଚ୍ଛା ଦରଦାମ ବୃଦ୍ଧିକରି

ସାଧାରଣ ଖାଉଟିଙ୍କୁ ଠକୁଥିଲେ । ଦଶଲକ୍ଷର ଗୃହକୁ ତିରିଶି ଲକ୍ଷରେ ବିକ୍ରୟ କରି, ସେଥିରୁ କୋଡ଼ିଏ ଲକ୍ଷ କଳା ଭାବରେ ନେଇଯାଉଥିଲେ, ଏବେ ସେମାନେ ସେପରି ଆଉ କରିପାରିବେ ନାହିଁ । ଶିକ୍ଷାନୁଷ୍ଠାନ ମାନେ ପ୍ରତିବର୍ଷ କ୍ୟାପିଟେସନ୍ ଫି, ଡୋନେସନ୍ ଆଦି ନାଁରେ ଅନେକ ଅର୍ଥ ନେଉଥିଲେ, ଏବେ ସେ ସବୁ ବି ହେବନାହିଁ । ଏହି ବ୍ୟବସ୍ଥା ଦ୍ୱାରା ସମାଜରେ ଏକ ସ୍ୱଚ୍ଛ ଅର୍ଥନୈତିକ ବ୍ୟବସ୍ଥା କାମ କରିବ ।

ସୀମାପାର ଆତଙ୍କବାଦୀମାନେ ଭାରତରେ ପ୍ରବେଶ କରିବାପାଇଁ ବହୁଳ ଭାବରେ ଏହି ମୁଦ୍ରାମାନଙ୍କୁ ଗଚ୍ଛିତ ରଖୁଥିଲେ । ପାକିସ୍ତାନରେ ଭାରତୀୟ ମୁଦ୍ରାର ଏକ ନକଲ କରୁଥିବା ରାକେଟ୍ କାମ କରୁଥିଲା । କୁହାଯାଉଛି, ଦେଶରେ ଗଚ୍ଛିତ ସମସ୍ତ ୫୦୦ ଏବଂ ୧୦୦୦ ଟଙ୍କା ନୋଟର ପ୍ରାୟ ଦଶ ପ୍ରତିଶତ ନକଲି ଥିଲା, ଏବେ ସେ ସବୁ ଧରାପଡ଼ିବ । ଏହି ବ୍ୟବସ୍ଥା ଦ୍ୱାରା ଆତଙ୍କବାଦୀଙ୍କ ମେରୁଦଣ୍ଡ ଭାଙ୍ଗିଯିବ ବୋଲି ଆଶା କରାଯାଉଛି । ନକଲି ଭାରତୀୟ ମୁଦ୍ରା ମଧ୍ୟ କମ୍ ହେବ । ଅନ୍ତତଃ କିଛି ଦିନ ପାଇଁ ଏହା କମ୍ ହୋଇପାରିବ । ଏହି ବ୍ୟବସ୍ଥାର ଦୀର୍ଘମିଆଦି ଲାଭକ୍ଷତି କେବଳ ସମୟ ଆସିଲେ ହିଁ ଜଣାପଡ଼ିବ ।

ସର୍ବୋପରି ଏହି ବ୍ୟବସ୍ଥା ଦ୍ୱାରା ଯଦିଓ କିଛି ଦିନ ପର୍ଯ୍ୟନ୍ତ ଦେଶରେ ଆତଙ୍କର ବାତାବରଣ ଖେଳିଯାଇପାରେ, ଏବଂ କିଛି ଲୋକଙ୍କୁ ଅସୁବିଧା ବି ହୋଇପାରେ, କିନ୍ତୁ ଆମକୁ ଉଜ୍ଜ୍ୱଳ ଭବିଷ୍ୟତ କଥା ଚିନ୍ତା କରିବାକୁ ହେଲେ ବର୍ତ୍ତମାନରେ କିଛି ଅସୁବିଧାକୁ ସାମନା କରିବାକୁ ପଡ଼ିବ ହିଁ ପଡ଼ିବ । ବିଭିନ୍ନ ଗଣମାଧ୍ୟମରେ ପ୍ରସାରିତ ସମ୍ବାଦକୁ ଦେଖିଲେ ଦେଶବ୍ୟାପୀ ଲୋକମାନେ ନରେନ୍ଦ୍ର ମୋଦୀଙ୍କ ଏହି ପଦକ୍ଷେପକୁ ସ୍ୱାଗତ କରୁଥିବା ଜଣାଯାଏ । ଆମେ ଆଶା କରୁଛୁ ଆଗାମୀ ଦିନରେ କଳା ବଜାରୀ, ବ୍ୟାପାରୀ ଏବଂ କଳାଧନ ସଞ୍ଚୟ କାରୀଙ୍କ

ଉପରେ କଡ଼ା କାର୍ଯ୍ୟାନୁଷ୍ଠାନ ନଆଯାଇ ଉଦାହରଣ ସୃଷ୍ଟି କରାଯାଉ । ଦେଶର ଧନ ମାତ୍ର କେତେ ଜଣଙ୍କ ପାଖରେ ଜମା ହୋଇ ନ ରହୁ । ସମସ୍ତଙ୍କୁ ନ୍ୟାୟମିଳୁ ।

## ଆମେରିକାରେ ଟ୍ରମ୍ପଙ୍କ ରାଜତ୍ୱ

ଚଳିତ ବର୍ଷ ଆମେରିକାର ରାଷ୍ଟ୍ରପତି ପଦବୀପାଇଁ ନିର୍ବାଚନ ଆୟୋଜିତ ହୋଇଥିଲା । ପ୍ରଥମରୁ ହିଁ ଏହାକୁ ନେଇ ଅନେକ କଳ୍ପନାଜଳ୍ପନା ଚାଲୁଥିଲା । ରାଷ୍ଟ୍ରପତି ପଦବୀ ଆଶାୟୀ ଡୋନାଲ୍ଡ୍ ଟ୍ରମ୍ପ୍ ଓ ହିଲାରୀ କ୍ଲିଣ୍ଟନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ସମଗ୍ର ବିଶ୍ୱରେ ମିଶ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପ୍ରଥମଥର ପାଇଁ ସୋସିଆଲ୍ ମିଡ଼ିଆରେ ଏହି ନିର୍ବାଚନର ପ୍ରଭାବ ଦେଖିବାକୁ ମିଳିଥିଲା । ନିର୍ବାଚନ ଶେଷ ହେବା ପର୍ଯ୍ୟନ୍ତ ଆମେରିକାର ୫୮ଟି ଗଣମାଧ୍ୟମ ସଂସ୍ଥା ମଧ୍ୟରୁ ୫୫ଟି ସଂସ୍ଥା ହିଲାରୀ କ୍ଲିଣ୍ଟନ ଜିତିବେ ବୋଲି ଭବିଷ୍ୟବାଣୀ କରିଥିଲେ ସୁଦ୍ଧା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ ଡୋନାଲ୍ଡ୍ ଟ୍ରମ୍ପ ଆମେରିକାର ୪୫ତମ ରାଷ୍ଟ୍ରପତି ହେବେ ବୋଲି ଜଣାପଡ଼ିଲା । ବୃତ୍ତିରେ ବ୍ୟବସାୟୀ ଟ୍ରମ୍ପ ଆମେରିକାର ଜଣେ ପ୍ରମୁଖ ଧନୀ ବ୍ୟକ୍ତି ଏବଂ ସେ ଆତଙ୍କବାଦ ବିରୋଧୀ ହୋଇଥିବାରୁ ତାଙ୍କର ବିଜୟରେ ଭାରତ ପରି ଦେଶରେ ଆନନ୍ଦ ଦେଖାଦେଇଛି । ଆତଙ୍କବାଦ ଓ ଇସଲାମ୍ ବିରୋଧୀ ମନ୍ତବ୍ୟ ଦେଇଥିବା ଟ୍ରମ୍ପଙ୍କ ବିଜୟ ପରେ ଏବେ ଅନେକ ଦେଶରେ ଆତଙ୍କ ଦେଖାଦେଇଛି । ପାକିସ୍ତାନ ଓ ଚୀନ ପରି ଦେଶ ଏହି ବିଜୟରେ ମର୍ମାହତ ହୋଇଛନ୍ତି । ନିଜର ନିର୍ବାଚନ ପ୍ରଚାର ସମୟରେ ଶ୍ରୀ ଟ୍ରମ୍ପ୍ ଘୋଷଣା କରିଥିଲେ ଯେ ସେ ଭାରତର ଅତି ନିକଟତର ଏବଂ ଶ୍ରୀ ନରେନ୍ଦ୍ର ମୋଦୀଙ୍କ ଜଣେ ପ୍ରଶଂସକ । ତଥା ସେ ହିନ୍ଦୁ ଧର୍ମର ଜଣେ ପ୍ରଶଂସକ । ତେଣୁ ଭାରତ ପାଇଁ ଅନେକ ଭଲ ହେବ ବୋଲି ଆଶା କରାଯାଉଥିବା ବେଳେ, ଟ୍ରମ୍ପ ଘୋଷଣା କରିଛନ୍ତି ଯେ ଆମେରିକାରେ କାମ କରୁଥିବା ବିଦେଶୀମାନଙ୍କୁ ପ୍ରତ୍ୟାବର୍ତ୍ତନ କରାଯାଇ, ସେମାନଙ୍କ ସ୍ଥାନରେ

ଆମେରିକାର ମୂଳ ନିବାସୀଙ୍କୁ କର୍ମନିଯୁକ୍ତି ଦିଆଯିବ, ଏହା ଦ୍ୱାରା ଆମେରିକାରେ କାମ କରୁଥିବା ଅନେକ ଭାରତୀୟ ଆତଙ୍କିତ ହୋଇପଡ଼ିଛନ୍ତି ।

## ଭୋପାଳ ଜେଲ୍ ଭଙ୍ଗା ଓ ସିମି ଆତଙ୍କୀଙ୍କ ଏନ୍‌କାଉଣ୍ଟର

ବିଗତ ମାସରେ ଯେଉଁ ଖବର ସମୁଦାୟ ଗଣମାଧ୍ୟମକୁ ବାନ୍ଧି ରଖିଥିଲା, ତାହା ଥିଲା ମଧ୍ୟପ୍ରଦେଶର ରାଜଧାନୀ ଭୋପାଳର ଅତ୍ୟନ୍ତ ସୁରକ୍ଷିତ ଜେଲରୁ ଆଠଜଣ କଏଦୀ ଫେରାର ହେବା ଏବଂ ଏହି ଘଟଣାର ମାତ୍ର ଆଠ ଘଣ୍ଟା ମଧ୍ୟରେ ସମସ୍ତ କଏଦୀଙ୍କୁ ଏନକାଉଣ୍ଟର ଦ୍ୱାରା ହତ୍ୟା କରାଯିବା । ପ୍ରତିବନ୍ଧିତ ସଂଗଠନ ମୁସଲିମ୍ ଛାତ୍ର ସଂଗଠନର ଆଠଜଣ ବିଚାରାଧୀନ କଏଦୀ ବହୁ ସୁରକ୍ଷିତ ଭୋପାଳ ଜେଲରୁ ଫେରାର୍ ହେବାରେ ସକ୍ଷମ ହୋଇଥିଲେ । ସେମାନେ ଫେରାର୍ ହେବା ସମୟରେ କର୍ତ୍ତବ୍ୟରତ କନେଷ୍ଟବଳଙ୍କୁ ହତ୍ୟା କରି ସେମାନେ ଜେଲର ତ୍ରିଶ ଫୁଟ୍ ଉଚ୍ଚ କାନ୍ଥ ଡେଇଁ ଚାଲି ଯାଇଥିଲେ ।

## ବିମୁଦ୍ରାକରଣ ପରେ ଅସୁବିଧା

ଚଳିତ ବର୍ଷର ସବୁଠାରୁ ଅଧିକ ଚର୍ଚ୍ଚିତ ବିଷୟ ହେଉଛି ବିମୁଦ୍ରୀକରଣ । ଅର୍ଥାତ ପୁରୁଣା ଟଙ୍କାକୁ ଅଚଳ କରିଦେଇ ନୂଆ ଟଙ୍କାର ପ୍ରଚଳନ ବ୍ୟବସ୍ଥା । ଯେଉଁଦିନ ପ୍ରଧାନମନ୍ତ୍ରୀ ମୋଦୀ ଏହି ବାବଦରେ ଟେଲିଭିଜନରେ ଆସି କହିଲେ ସେହିଦିନ ହିଁ ସମସ୍ତେ ଜାଣି ଯାଇଥିଲେ ଯେ ଏହା ଦ୍ୱାରା ଅନେକ ଅସୁବିଧା ହେବ । ଯେଉଁମାନେ ଟଙ୍କା ମାଡ଼ି ବସିଥିଲେ ସେମାନେ କଣ କରିବେ କିଛି ଜାଣିପାରିଲେ ନାହିଁ, ଆଉ ଯେଉଁମାନଙ୍କ ପାଖରେ ଅଳ୍ପ କିଛି ସଞ୍ଚିତ ଧନ ଥିଲା ସେମାନେ ତୁରନ୍ତ ଏହାକୁ ବଦଳାଇବା ପାଇଁ ଏମିତି ବ୍ୟାକୁଳତା ଦେଖାଇଲେ ଯେ ବ୍ୟାଙ୍କ ମାନଙ୍କ ସାମନାରେ ଅହେତୁକ ଭିଡ଼ ଦେଖାଦେଲା । ଏହାକୁ ଗଣମାଧ୍ୟମମାନେ ଏମିତ ପ୍ରଚାର କଲେ ଯେ ସତେ ଯେମିତି ସରକାର ଜାଣିଶୁଣି ଦେଶକୁ ଅରାଜକତା ଆଡ଼କୁ

ଟାଣି ନେଲେ । ବିରୋଧୀଦଳମାନେ ଏହା ବିରୁଦ୍ଧରେ ଆଗେଇ ଆସିଲେ । ସଂସଦୀୟ ବ୍ୟବସ୍ଥାରେ ସରକାରଙ୍କ ପ୍ରତ୍ୟେକ ନିଷ୍ପତ୍ତିକୁ ବିରୋଧ କରିବା ବିରୋଧୀ ଦଳଙ୍କ ପାଇଁ ଏକାନ୍ତ କାମ୍ୟ, ସେମାନେ ତାହା କଲେ । କିଛି ରାଜନୈତିକ ଦଳ ଏହାକୁ ପ୍ରତ୍ୟାହାର କରିବାପାଇଁ ଦାବୀ କରିଲେ । ଆଉ କିଛି ଏହା ବିରୋଧରେ ଭାରତ ବନ୍ଦର ଆହ୍ୱାନ ବି ଦେଇଦେଲେ । ସେ ଯାହେଉ, ସମଗ୍ର ଦେଶ ଏକଜୁଟ ହୋଇ ସରକାରଙ୍କ ଏହି ପଦକ୍ଷେପକୁ ସମର୍ଥନ ଜଣାଇବାପରେ ବିରୋଧୀଦଳଙ୍କ ଦାବୀ ଅଗ୍ରାହ୍ୟ ହୋଇଗଲା ।

ହେଲେ ଏହି ପ୍ରକ୍ରିୟାଦ୍ୱାରା ସତରେ ଅନେକ ଅସୁବିଧା ହୋଇଛି । ବର୍ତ୍ତମାନ ସୁଦ୍ଧା ଲୋକମାନଙ୍କୁ ଦୈନିକ ସର୍ବାଧିକ ୨ ହଜାର ଟଙ୍କା ହିଁ ଏଟିଏମ୍‌ରୁ ବାହାର କରିବାକୁ କୁହାଯାଉଛି । ଯାହା ଅନେକଙ୍କ ପାଇଁ କଷ୍ଟକର ହୋଇପାରେ । ଯେଉଁମାନେ ବର୍ତ୍ତମାନ ଘରେ ବିବାହ ବ୍ରତାଦି ଉତ୍ସବ ପାଳନ କରିବାକୁ ଚାହୁଁଥିଲେ ସେମାନେ ଏହା ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହେଲେ । ସୋସିଆଲ୍ ମିଡ଼ିଆ କିନ୍ତୁ ଏହାକୁ ନେଇ ବିଶେଷ ଉତ୍ସାହିତ ଦେଖାଦେଉଥିଲେ । ସରକାରଙ୍କୁ ସମର୍ଥନ କରୁଥିବା ବ୍ୟକ୍ତିଙ୍କୁ ବିରୋଧୀମାନେ ଅନ୍ଧଭକ୍ତ ବୋଲି କହିବାର ଦେଖାଗଲା । ଅବଶ୍ୟ ଏହା ଅଲଗା କଥା ଯେ ସେହି ବ୍ୟକ୍ତିମାନେ ବିଗତ ସତୁରି ବର୍ଷଧରି ଦେଶର ହୀନଅବସ୍ଥା ହେଉଥିବା ସମୟରେ ନିଜ ଚକ୍ଷୁମାନ କେଉଁଠି ରଖିଦେଇଥିଲେ, ତାହା ସେମାନେ ହିଁ ଜାଣିଥିବେ । ସେ ଯାହେଉ, ଏହି ପତ୍ରିକା ପ୍ରକାଶନ ହେଉ ହେଉ ନିଷ୍ପତ୍ତି ନିଆଯିବାର ଅର୍ଦ୍ଧାଧିକ ଦିନ ସରିଯିବଣି । ଆଉ ମାତ୍ର କୋଡ଼ିଏ ଦିନ ଅପେକ୍ଷା କରିବାକୁ ପଡ଼ିବ । ଆମେ ଆଶା କରୁଛୁ ଏହି ଦୁର୍ଦ୍ଦିନ ଖୁବ୍ ଶୀଘ୍ର ଅପସରି ଯିବ ।

କିନ୍ତୁ ଦେଶକୁ ଦୁର୍ଦ୍ଦଶାରେ ପକାଇବା ଭଳି ଏକ ନିଷ୍ପତ୍ତି ପ୍ରଧାନମନ୍ତ୍ରୀ ଶ୍ରୀ

ମୋଦୀ ନେଲେ କେମିତ ? ସେ କଣ ଜାଣିନଥିଲେ ଯେ ଏହା ଦ୍ୱାରା ଦେଶରେ ଏମିତ ଏକ ପରସ୍ଥିତ ସୃଷ୍ଟି ହେବ ? ଏହାପଛରେ ଅନେକ କଥା ଶୁଣିବାକୁ ମିଳୁଛ । ସେଥିରୁ ସଦ୍ୟ ପ୍ରାପ୍ତ ଏକ ଖବର ହେଉଛ, ବଗତ ଦନରେ ଭାରତର ଉର କ୍ଷେତ୍ରରେ ଆତଙ୍କବାଦୀ ଆକ୍ରମଣ ପରେ ଭାରତ ତରଫରୁ ହୋଇଥିବା ସର୍ଜିକାଲ୍ ଷ୍ଟ୍ରାଇକ୍ ପରେ, ପାକସ୍ତାନ ଆତଙ୍କିତ ହୋଇ ଭାରତ ଉପରେ ଆକ୍ରମଣ ପାଇଁ ଯୋଜନା କରୁଛ । ହେଲେ ସୈନ୍ୟବଳରେ ତାହା ସମ୍ଭବ ହୋଇପାରବ ନାହିଁ, ତେଣୁ ସେ କାଶ୍ମୀରରେ ଛାୟା ଯୁଦ୍ଧ ଆୟୋଜନ କରୁଛ । କାଶ୍ମୀରରେ ମୁଜାହଦିନର ଆତଙ୍କବାଦୀ ବୁରହାନ୍ ୱାନୀ ଏନ୍କାଉଣ୍ଟର୍ ପରଠାରୁ କାଶ୍ମୀରରେ ପାକସ୍ତାନ ଆୟୋଜତ ପଥର ଫୋପଡ଼ା କାର୍ଯ୍ୟ ଚାଲୁଥିଲା । ଦୀର୍ଘ ଚାରମାସ ଧର ଏହା ଉପରେ କୌଣସି ନୟନ୍ତ୍ରଣ ଥିଲା ପର ଲାଗୁନଥିଲା । ପରୋକ୍ଷରେ ଏହା ପାଇଁ ପାକସ୍ତାନରୁ ପ୍ରସ୍ତୁତ ନକଲ ଭାରତୀୟ ମୁଦ୍ରାର ବହୁଳ ବ୍ୟବହାର ବୋଲ ଜାଣିବାପରେ ସରକାରଙ୍କ ତରଫରୁ ତୁରନ୍ତ ଏହ ସବୁ ବହୁମୂଲ୍ୟ ମୁଦ୍ରାକୁ ଅଚଳ କରଦେବାର ନଷ୍ପତ୍ତି ନଆଯାଇଥିଲା । ଏହା କରବା ଏତେ ସହଜ ନଥିଲା, କାରଣ ଭାରତର ଜନସାଧାରଣ ଚାହିଁଥିଲେ, ଏହା ବରୋଧରେ ଆନ୍ଦୋଳନାତ୍ମକ ପଦକ୍ଷେପ ନେଇ ପାରଥାନ୍ତେ । କନ୍ତୁ ଭାରତର ଜନସାଧାରଣ ସରକାରଙ୍କ ଉପରେ ଆସ୍ଥା ଦେଖାଇବାଦ୍ୱାରା ଏହା ସଫଳ ହୋଇପାରଲା ।

ମୁଦ୍ରା ଅଚଳ ହେବାପରଠାରୁ କାଶ୍ମୀରରେ ପଥର ଫୋପଡ଼ା କାର୍ଯ୍ୟକ୍ରମ କାଲେ ହେଉନାହିଁ ବୋଲ ଶୁଣାଯାଉଛ । ଆଗାମୀ ବର୍ଷ ଆରମ୍ଭରେ ଉତ୍ତରପ୍ରଦେଶରେ ହେଉଥିବା ସାଧାରଣ ନର୍ବାଚନରେ ଆଉ ଟଙ୍କା ଦେଇ ଭୋଟ୍ କଣି ହେବନାହିଁ ବୋଲ ଶୁଣିବାକୁ ମିଳୁଛ । ବମୁଦ୍ରୀକରଣ ପରଠାରୁ ନେତାମାନଙ୍କର ରଥଯାତ୍ରା, ମହାସଭା ଆଦର ଅନ୍ତ ହୋଇଛ । ନୋଟ୍ ବନ୍ଦ

କରବା ଦ୍ୱାର୍ ଯାହା ବ ଅସୁବଧା ହେଉ ନା କାହିଁକ, ସର୍ବସାଧାରଣରେ କନ୍ତୁ ଗୋଟିଏ ବଶ୍ୱାସ ଜାଗ୍ରତ ହୋଇଛ ଯେ ଆଗାମୀ ଦନରେ ଏହା ଦ୍ୱାର୍ ଅନେକ ଲ୍ଭ ହେବ । ସେ ଯା ହେଉ ଭବଷ୍ୟତରେ ଆମ ଦେଶ ସୁନା ଅଣ୍ଡାଦଆ କୁକୁଡ଼ା ପାଲଟି ଯାଉ, ଏହ କାମନା କର ଚଳତ ମାସର ଆହ୍ୱାନକୁ ଆପଣ ମାନଙ୍କୁ ଉପହାର ଦେଉଛ ।

ଆଶା କରୁଛ ଚଳତ ମାସର ଆହ୍ୱାନ ଆପଣଙ୍କୁ ଭଲ ଲ୍ଗିବ ।

ଧନ୍ୟବାଦ

ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ



# ସମ୍ପାଦକଙ୍କୁ ପତ୍ର



ବରୁଣ କୁମାର ଦାସ

ମହାଶୟ

ପ୍ରଣାମ । ଆହ୍ୱାନ ପରବାରର ସବୁ ସଦସ୍ୟ/ସଦସ୍ୟାଙ୍କୁ ଯଥାର୍ଥ ସମ୍ମାନ ।

ସମସାମୟିକ ଓଡ଼ିଆ ସାହତ୍ୟର ଗତ, ପ୍ରବୃତ୍ତି, ଧାର, ବ୍ୟାଧି ଓ ନାନା ସମସ୍ୟାର ଅପରେସନ କର ସୁସ୍ଥ କର ତୋଳପାରବାର ପ୍ରୟାସରେ ସଜ୍ଜିତ ଏଥରର ସଂପାଦକୀୟ । ସାହତ୍ୟରେ ରଜନୀତ ବଂଗ ପ୍ରଦେଶରୁ ଆମଦାନୀ ହୋଇ କ୍ରମଶଃ ବସ୍ତାର ଲଭ କରୁଛ ଓଡ଼ିଶାରେ । ପ୍ରିୟାପ୍ରୀତତୋଷଣ ନୂଆଁ କଥା ନୁହେଁ । ମୁଁ ପଣରୁ ଆମ ପଣକୁ ଯାଇ ପାରବାର ଆନ୍ତରକତା ଏକ ପ୍ରଶ୍ନବାଚୀ । ଗୋଷ୍ଠୀବାଦ ଖାଲ ବ୍ରହ୍ମପୁରରେ କାହିଁକ - ସମଗ୍ର ଓଡ଼ିଶାରେ ଉଣାଅଧିକେ ବଦ୍ୟମାନ । ଟଙ୍କା ବନମୟରେ ପୁରସ୍କାର, ସମ୍ମାନ କମ୍ବା ସୁଯୋଗ କ୍ରମଶଃ ସାହତ୍ୟକୁ ଆକ୍ରାନ୍ତ କରଗ୍ଲଛ । ସବୁଠି ପ୍ରତଯୋଗୀତା ନଜକୁ ବଞ୍ଚାପିତ କରପାରବାର । ସଂପାଦକଙ୍କ ସାହସ, ଦମ୍ଭ, ଉତ୍ସାହ ଏବଂ ସାହତ୍ୟାନୁରଗୀ ପ୍ରବଣତା ମୁଗ୍‌ଧ କରଛ । ଧନ୍ୟବାଦ ଡାକ୍ତର କଥାକାର ଜ୍ୟୋତ ପ୍ରସାଦ ପଟ୍ଟନାୟକ ମହାଶୟ ।

ଏଥରର ଆହ୍ୱାନ ସଂସ୍କରଣରେ କବତାର ସମ୍ଭାର ଅନ୍ୟ ବଭାଗଠୁ ବଳ । ଅନେକ କବଙ୍କର ବଭନ୍ନ କବତା ପାଠ କରବାର ସୁଯୋଗ ମିଳଛ । ଅନ୍ୟ ବଭାଗ ସବୁ ଯଥାରୀତ ସୁଖପାଠ୍ୟ ।

ଅନୂଦିତ ଗଳ୍ପ ନବ ସଂଯୋଜନ । ସବୁକିଛିକୁ ଯୋଗ କରିଲେ ଏଥରର ଆହ୍ୱାନ ସତରେ ଏକ ବିଶେଷାଂକ ।

ନିରୁତା ସାହିତ୍ୟ ଫର୍ଦ୍ଦ ଆହ୍ୱାନର ଆହ୍ୱାନରେ ସାମିଲ ହୋଇପାରିଛି, ଆଗକୁ ଅନ୍ୟମାନେ ମଧ୍ୟ ଆସିବେ । ପତ୍ରିକାର ଶୁଭକାମନା ସହ ଶେଷ କରୁଛି ଏହି ଚିଠି ।

ଇତି

ବରୁଣ କୁମାର ଦାସ

# ପ୍ରଥମାଷ୍ଟମୀ



ଅନାମ ଚରଣ ସାହୁ

ଓଡ଼ିଆଘର ପୁଅ କ ଝିଅ ଆଗେ ଜନମ ଯିଏ
ତା'ପାଇଁ ଏଠି ପ୍ରଥମାଷ୍ଟମୀ ପାଳନ ହୋଇଥାଏ ।
ମଥାରେ ତା'ର ତଳକଗାର ଦେହରେ ନୂଆ ଜାମା
କେତେ ଯେ ଖୁସି ପିଠା ଓ ପଣା କବା ଉପମା ଦେବା ।
ହଳଦୀ ଗଛ ସରୁପତର ଏଣ୍ଡୁର ହୁଏ ଗଢ଼ା
ନାନା ରକମ ଓଡ଼ିଆ ଖାଦ୍ୟେ ଇଶାଣେ ହୁଏ ବଢ଼ା ।
ନୂଆ ଜାମାଟି ଖୁସିରେ ପିନ୍ଧି ପୋଢୁଅଁ ପୁଅ ଝିଅ
ଗୁରୁଜନଙ୍କ ପାଦପଦ୍ମରେ ମଥା ନୁଆଇଁ ଦଅ ।
ପିତାମାତାଙ୍କ ଚରଣ ସେବା କରିବାପାଇଁ ସିଏ
ମନ ମଧ୍ୟରେ ବଡ଼ ହରଷେ ଶପଥ ନେଇଥାଏ ।
ବଡ଼ମାନଙ୍କୁ ଦେବା ସମ୍ମାନ ଜଣାଏ ଏହ ଓଷା
ବର୍ଣ୍ଣିବା ପାଇଁ ଏ ଉପକାର ନାହିଁ ମୋ ମୁଖେ ଭାଷା ।

ବଭୂତପୁର, କାକଟପୁର, ପୁରୀ, ୭୫୨୧୦୮
ଦୂରଭାଷ : ୯୯୩୭୨୧୦୨୬୦
ଇମେଲ୍ : anamsahoo50@gmail.com

# କାର୍ତ୍ତିକ ପୂର୍ଣ୍ଣିମା



ହମାଂଶୁ ଶେଖର ବାରକ

ମିଠା ଶୀତ ନେଇ    କାର୍ତ୍ତିକ ପୁନେଇ
ଆସିଲା ଓଡିଶା ଦେଶ
ପ୍ରତ୍ୟୁଷରୁ ଉଠି    ସ୍ନାନ ଶୌଚ ସାର
ଓଡ଼ିଆ ହୋଇଲେ ବେଶ ।।
କଦଳୀ ପଟୁଆ    ନର୍ମିତ ନଉକା
ଧର ଗଲେ ନଦୀ ତୀରେ
ପ୍ରଦୀପ ଜଳାଇ    ପାନ ଗୁଆ ଥୋଇ
ଭସାଇଲେ ନଦୀ ନୀରେ ।।
ଭକତ ଚଉରେ    ଗାଇ ଆ କା ମା ବୈ
ମନାସେ ପୁଣ୍ୟ ଅର୍ଜନ
ପ୍ରତ୍ୟୁଷର ସ୍ନାନ    ଦେବ ଦରଶନ
କରେ କଳ୍ମଷ ନାଶନ ।।
ଆଜର ସୁଦନ    କରଏ ସ୍ମରଣ
ସାଧବ ପୁଅର ଗାଥା
ଦରଆ ପାରରେ    ସୁନାମ ଅରଜ
ଟେକ ଗ୍ଲୁଥିଲା ମଥା ।।
ନୀଳ ପାରବାର    ବକ୍ଷରେ ବୋଇତ
କରୁଥିଲା ଚଳମାନ
ସୁନୀଳ ଅମ୍ବର    ତଳେ ଖାଲ ଜଳ

ହେଉଥିଲା ଦୃଶ୍ୟମାନ ।।
ରଜନୀ ଅନ୍ଧାର ଝଡ ତୋଫାନକୁ
ନ ଥିଲା ଖାତର ତାର
ମାଆ ମଙ୍ଗଳାଙ୍କୁ ସୁମିରଣା କରି
ବିପଦୁ ହୁଅଇ ପାର ।।
ବୋର୍ଣ୍ଣିଓ ସୁମାତ୍ରା ଜାଭା ବାଲି ଦ୍ୱୀପେ
କରୁଥିଲେ ବ୍ୟବସାୟ
ଅଜସ୍ର ସମ୍ପତ୍ତି ଅରଜନ କରି
ଫେରୁଥିଲେ ସ୍ୱ ଆଳୟ ।।
ଫେରନ୍ତେ ବିପଣି ଘରର ଘରଣୀ
କରୁଥିଲେ ବନ୍ଦାପନା
ଓଡିଆ ଜାତିର ଏ ଗୌରବ ଗୀତ
ଗାଏ କାର୍ତ୍ତିକ ପୂର୍ଣ୍ଣିମା ।।
ନାହିଁ ସେ ସାଧବ ନାହିଁ ତା ବୋଇତ
ଯାଇଅଛି ସବୁ ହଜ
କଦଳୀ ଡଙ୍ଗାର ପ୍ରତୀକ ଭସାଣ
ସ୍ମୃତି ଜଗାଉଛି ଆଜ ।।
ଉଠ ହେ ଓଡିଆ ଉଠ ମୋର ଭାଇ
ଅତୀତ ଗୌରବ ସ୍ମର
ଜାଗ ସ୍ୱାଭିମାନ ତ୍ୟାଗ କୋଢିପଣ
ଆଗେ ହୁଅ ଅଗ୍ରସର ।।

# ପ୍ରତୀକ୍ଷା... ଏ ଶବରୀର !



ଡା ସନ୍ଧ୍ୟାରାଣୀ ପାଣିଗ୍ରାହୀ

ତୁମର ପାଇଁ
ତୁମର ସହ
ମିଶିବା ପାଇଁ
ତୁମ ସହ ଅନ୍ତରଙ୍ଗତାର
ନିଦର୍ଶନ ଅନ୍ତରଙ୍ଗର
ତୁମ ସହ ହସ ଗପର
କିଛିଟା ମୂହୁର୍ତ୍ତର
ନିରୋଳା ବେଳର
ତୁମେ ହିଁ କହିଥିଲ
କେବେ ଥରେ
ଆସିବ ତୁମେ
ମୋର କାନରେ
ଚୁପ୍ ଚୁପ୍ ଆସି ବସିବ
ଆଉ ସେ ମୂହୁର୍ତ୍ତ ର
ପ୍ରତୀକ୍ଷା କରିବ ମୁଁ
ମୁଁ ବସିଛି
ଫୁଲ ସଜାଇ
ମିଠା ଖଟା ଫଳ ଗୋଟାଇ

ଖୋଜୁଛି ତୁମକୁ
କେବଳ ତୁମର ହସ
ଦିନଗତ ବରଷ ମାସ
ଶୀତଗତରେ
ଗରମ ଗ୍ରୀଷ୍ମତରେ
ତୁମେ ତ ଆସୁନାହଁ
ଆଉ ଏ ଜଣାଉ ନାହଁ
ତୁମେ ଆସିବନି ଏ ବେଳାରେ
ଅଟକି ଗଲି କି ଆଉ କି ଆଳରେ
ଏ ପ୍ରୟାସ କିଣ ବ୍ୟର୍ଥ
ସତରେ ମୋ ଭାବନାର
ତା'ର ରଙ୍ଗ ତୂଳୀରେ
ଆଙ୍କି ଥିବା ପ୍ରତିଛବି
ତୁମ ଚିତ୍ରପଟଟି
ହୃଦୟର ପଟରେ
ଭୁଲି ହେଲା ବୋଧେ
ତୁମେ ଦେଇଥିବା ପ୍ରତିଶ୍ରୁତି
ତୁମ ଝରର ସ୍ମୃତି
ଝରି ଗଲା ବାସି ଫୁଲ
ହୋଇ ଚୁନା ଚୁନା
ଗଙ୍ଗଶିଉଳି ଫୁଲ ଛିନ୍ନ
ମୁଁ ଜାଗ୍ରତ
ଓ ଜାଗର ଜାଳିବି
କାଳେ ତୁମେ ଅନ୍ଧକାର
ବଳୟରେ ଆସି ପହଞ୍ଚିବ
ଆଉ ମୋତେ ଖୋଜିବ
ମୁଁ ତୁମ ସେ ପରଶର
ସେ ପାଦ ଧୂଳିର
ବେଳାଭୂମିର ବାଲିର
ଆଉ ସେ ଆର୍ଦ୍ରତାରେ
ଭିଜିବାର..
ଯେଉଁ ଚର୍ଚ୍ଚା ନିର୍ବାଣର
ସେ ପ୍ରାପ୍ତିର
ତୁମ ପ୍ରାପ୍ୟ
ଓ ତୁମ ପ୍ରାପ୍ତି
ମୋର ତୃପ୍ତି
ଏଥର ଆସିଯାଅ
ଖୁବ୍ ହେଲା
ସବୁ ମୂହୁର୍ତ୍ତଗୁଡା
ସରି ସରି ଯାଉଛି

ଆତୁର ଲୁହ ଢାଳ
ଅଛ ବାକ ଯିବା ଜଳ
ତୁମେ ଆସିବ ଅଗ୍ନିକ
ସଳତା ଜଳୁଛ
ସେଥିରେ ଏ
ହୃଦୟଟା ଜାଳେଣି ସାଜଛ
ପୁନର୍ବାର ଏଥିରେ
ସଞ୍ଜୀବନୀ ଭରୁଛ
ଆଉ ଆଶ୍ୱାସନା ଦେଉଛ
ଏଥର ନଶ୍ଚୟ ଆସିବ କହୁଛ
ମୋ ହୃଦୟ କହୁଛ ସତ
ହେବ ଏ ମନ ଓ ହୃଦୟ ଆହ୍ଲାଦତ

ଏ ଆସିବାର ନୀରବ କୋଳାହଳ
ଛୁଇଁବ.. ଆଘ୍ରାଣ.. ପରଶରେ
ସର୍ବାଙ୍ଗ ଜର୍ଜରତ ବ
ସେ ଉଷ୍ଣତା ଓ ପରଶରେ
କରବ ପବତ୍ର ଅବୟବ
ପ୍ରୟାଣ ରୁ ମହାପ୍ରୟାଣ
ମୋର ଏ ତ ଆକାଂକ୍ଷା
ଓ ମୋ ସପନର ଚରତ୍ର ସଂହତା ।

ବରଷ୍ଠ ସ୍ତ୍ରୀ ଓ ପ୍ରସୂତୀ ରୋଗ ବଶେଷଜ୍ଞା
ବ୍ରହ୍ମପୁର, ଓଡ଼ିଶା

# ମୟୂରୀ



ରଜକଶୋର ମଲ୍ଲକ

ଉତ୍ସର୍ଗ : ଏ କବତା କୃତ୍ତିକା ପାଇଁ

ନେତ୍ରେ କଜ୍ଜଳ ତୁମ ନୁଖୁର କେଶ
ଯେସନ ନୃତ୍ୟାଙ୍ଗନା ମୟୂରୀ ବେଶ ।
ଦନେ ତୁମେ ନଥିବ ପାଖରେ
ଖାଲଥିବ ତୁମ ସ୍ମୃତ ! !
ତୁମ ଫଟୋଟିକୁ ଧର ନରେଖି ଗ୍ରହୁଁଥିବ
ଆଖିରୁ ଝରପଡୁଥିବ ଖୁସିର ସ୍ମୃତ ଲୁହ
ମନେ ପଡୁଥିବ -
ତୁମ ହସ ହସ ମୁହଁ
ଆଉ ବୋଉପର ସ୍ନେହ ।୧ ।
ଦନେ ତୁମେ ନଥିବ ପାଖରେ
ଖାଲଥିବ ତୁମ ସ୍ମୃତ ! !
ଆଖିପଲକରେ ଖେଳୁଥିବ ତୁମ ପିଲାଳଆମୀ
ତୁମ ଅଳ, ଅଝଟ ଆଉ କୁନଝିଅ ପର କାନ୍ଦ
ଉଙ୍କିମାରୁଥିବ ସ୍ୱପ୍ନରେ,
ହେଉଥିବ ସତେ କେତେ ଖୁସି ତା'ର ହୃଦ
ଯା'ଘରେ ପଡ଼ିବ ସାଥୀ ତୁମ ଲକ୍ଷ୍ମୀପାଦ ।୨ ।

ଦନେ ମୁଁ ନଥିବ ତୁମେ ନଥିବ

ସ୍ମୃତସବୁ ଆଲମିରାରେ ପଡ଼ିଥିବେ ମୃତବତ୍

ତୁମ କୋମଳ ହାତର ସ୍ପର୍ଶରେ ପୁଣିଥରେ ଜେବେ ଜୀବନ୍ତ ।

କୁନ ପିଲାମାନେ ବାହାନା କର

ପଢ଼ିନେବେ ଧୂଳମଳ ଲଗା ଡାଏରୀକୁ

ଆଉ ପରସ୍ପରକୁ ପ୍ରଶ୍ନ କରୁଥିବେ

ଏ ମୟୁରୀଟି କଏ ?? ।୩ ।

ଦୂରଭାଷ : ୯୯୩୮୦୪୦୪୩୦

# ପ୍ରେମନଦୀ



ଶମ୍ଭୁନାଥ ଦାସ

ବୋଧହୁଏ ପ୍ରେମର ଅନ୍ୟନାମ କବତା
ଯେଣୁ ମୋର କବତାର ମହକରେ
ତୁମେ ସାଜିଲ ପ୍ରେମିକା...
ପାଦରେ ନୂପୁର, ହାତରେ କଙ୍କଣ
ବାନ୍ଧିଲ ରଜନୀଗନ୍ଧାରେ ଗଭା...
ମୁହଁରେ ରଙ୍ଗବୋଳ
ଦେହରେ ଛିଞ୍ଚିଲ ଅତର
ଉଡ଼ାଇଲ ପ୍ରେମର ବାସନା,
କବଙ୍କ ଲେଖନୀ ସବୁ ଉଠିଲ୍ ଟାଙ୍କୁର
ଶତଶହସ୍ର କବତାଗୁଚ୍ଛର ତାନ
ଝଙ୍କୁରତ କଲ୍ ତୁମ ମନୋଦ୍ୟାନ
ଗ୍ଭଲଗଲ ଗ୍ଭଡ଼ି ମୋତେ ହୋଇ ପ୍ରଲୋଭତ ।

ଯେଉଁ ଲେଖନୀ ମୋହର
ସଜାଇଥିଲ୍ ତୁମ କଅଁଳ ଯୌବନ
ଯୋଖିଥିଲ୍ ଉଡ଼ିବାର ଜୀବନ ଡେଣାକୁ
ସେ ଡେଣାରେ ଉଡ଼ିଗଲ ତୁମେ
ମୋର ସୀମା ମନ ବଗିଗ୍ଭରୁ

କରିଦେଇ ନିସ୍ତେଜ ମୋର ଲେଖନୀକୁ
ଲାଲ୍ କରିଦେଲ ମୋର ସବୁଜ ପ୍ରାଣକୁ ।

ଏଥର ପୁଣି କବିତା
ପ୍ରେମନୁହେଁ ପ୍ରଳୟର କଥା
ବିଳାସ ନୁହେଁ ବିରହ ବେଦନା
ନୟନୁ ଝରଇ ଲୁହ ସିନା,
ଲେଖନୀରୁ ଝରଇ ରୁଧିର
ଯନ୍ତ୍ରଣାରେ ହୋଇ ଛଟପଟ
ଅନୁଭବୁଛି ମୁଁ ଏବେ
ପ୍ରେମନଦୀ ବହୁତ ଗଭୀର
ସେଠୁ ପଦ୍ମଫୁଲ ତୋଳିବା
ବଡ଼ ମୁସ୍କିଲ୍ ବ୍ୟାପାର
ସେଠି ତ ଅନେକ କୁମ୍ଭୀର ।

ମୁଖ୍ୟ ସମ୍ପାଦକ, ଅଭିଯାନ
୧୭୫-ଏ/୧, ବିଶ୍ୱଲକ୍ଷ୍ମୀ ତାଲା ରୋଡ଼
କୋଲକାତା - ୭୦୦୦୬୦
ଦୂରଭାଷ : ୦୯୦୩୮୩୯୭୧୩୫

# କଳାଧନ



ପ୍ରଶାନ୍ତ କୁମାର ନାଥ

କଳା ସାମ୍ରାଜ୍ୟର ଅନ୍ତ ହୋଇଗଲା
ଅଚଳ ହୋଇଣ ଟଙ୍କା
କଳା ବଜାରୀଙ୍କ ମୁଣ୍ଡରେ ପଶିଛି
ଆତଙ୍କର ଏକ ଶଙ୍କା ।
ଲୁଟି ଲୁଟି ସିଏ ରଖିଥିଲେ ଯାହା
ହୋଇଗଲା ସର୍ବନାଶ
ଆଠ ନଭେମ୍ବର ମଧ୍ୟରାତ୍ରି ପୁଣି
କରଦେଲା ସବୁ ଗ୍ରାସ ।
ବଡା ବଡା ଟଙ୍କା ଅଚଳ ହୋଇଲା
ମୁଣ୍ଡରେ ପଶୁନି ଚେତା
କଳା କାରନାମା ଧରା ପଡିଯିବ
ରଖିଥିଲେ କୋଟି ଶତା ।
ଲୁଚ ଲୁଚ ଯିଏ ପିଉଥିଲେ କ୍ଷୀର
ପଡିଯିବେ ଏବେ ଧରା
ସବୁ ବ୍ୟଭିଚାର ଲୀନ ହୋଇଯିବ
ଦୁନିଆ ଦାଣ୍ଡରୁ ପରା ।

ସମ୍ଭାଳ ରଖିବେ କେତେ ଅବା ସିଏ

ଭାବୁ ଭାବୁ ଦିନ ଯାଏ

ସଭିଙ୍କ ଓଠରେ ହସ ଖେଳୁଅଛି

ସତ୍ୟକୁ ଯେ ଭଲପାଏ ।

ସୁନ୍ଦରପୁର, ଉତ୍ତରକୂଳହାଟ୍, ପ୍ରୀତିପୁର, ଯାଜପୁର ।

ମୋ - ୦୮୮୯୨୩୦୧୧୪୩

# ମିଛେଇ ଝିଅର ପ୍ରେମ



ପ୍ରଶାନ୍ତ କୁମାର ନାଥ

ଝିଅତ ମିଛେଇ ହୁଅନ୍ତ ଫୁଲେଇ
ଘଡି ଘଡି ହୋଇ ସଜ
କର ବ୍ରେକ୍‌ଅପ୍ ହୋଇ ମେକ୍‌ଅପ୍
ଖୋଜୁଥାନ୍ତ କେଳକୁଞ୍ଜ ।
ଭଲ ସେ ପାଆନ୍ତ ଧୋକାବ ଦଅନ୍ତ
ତଥାପି ଓଠରେ ହସ
ଜଣକୁ ଛଡିକ ଜଣଙ୍କୁ ଧରନ୍ତ
ବଶ୍ୱାସରେ ଦେଇ ବଷ ।
କଥାରେ ଭୁଲେଇ ପ୍ରେମରେ ଫସେଇ
କର କେତେ ଅଭନୟ
ଡ୍ରେସ୍ ପର ତାଙ୍କ ପ୍ରେମିକ ବଦଳେ
ନଥାଏ ତାଙ୍କର ଭୟ ।
ଜୀବନେ ଅନେକ ପ୍ରେମିକା କରନ୍ତ
ହୃଦୟେ ରଖନ୍ତ ନାହିଁ
ଉପରେ ଉପରେ ଭଲସେ ପାଆନ୍ତ
ଟାଇମ୍ ପାସ୍‌ର ପାଇଁ ।

ଯୁଆଡେ ଆଆନ୍ତି ସିଆଡେ ପ୍ରେମିକା

ସେଇଠିତ ହସ ଖୁସି

ଆଜର ପ୍ରେମିକ କାଲକ ନଥାଏ

ହୋଇଯାଏ ସିଏ ବାସି ।

ହୃଦୟରୁ କେବେ ଭଲ ପାଆନ୍ତିନ

ହୃଦୟ ତାଙ୍କର ନାହିଁ

ଅନ୍ୟର ଲୁହରେ ହସିଥାନ୍ତି ସିଏ

ସେହ ଖୁସି ତାଙ୍କ ପାଇଁ ।

ସୁନ୍ଦରପୁର, ଉତ୍ତରକୂଳହାଟ୍, ପ୍ରୀତପୁର, ଯାଜପୁର ।

ମୋ-୦୮୮୯୨୩୦୧୧୪୩

# କବିତା ଗୁଚ୍ଛ



ଆଶୁତୋଷ ମେହେର

୧ - ଜୀବନ

ଦୁଃଖଟା ପ୍ରଭୁଙ୍କ ସୁଖଟା ପ୍ରଭୁଙ୍କ
ସେତ ଜୀବନ କରମ ଧାର,
ଦୁଃଖ ଓ ସୁଖର ଫେଣ୍ଟାଫେଣ୍ଟି
ଦେଇ, ସଂସାର ହୋଇବା ପାର । ।

୨ - ବନ୍ଧନ

ବନ୍ଧନେ ପ୍ରିୟା, ବାନ୍ଧିଲ ଭିଡି
ଦେହ ଦେହାତୀତ କର,
ଏ ଜୀବନ ନୁହେଁ ସାତ ଜୀବନରେ
ମୋତେ, ଚାଲିବାକୁ ହାତ ଧର !!!

୩ - ବିରହ

ବାଟ ଚାହିଁଚାହିଁ ଯାଉଛି ମୋ ଦିନ
ମନ ଯେ ବୁଝଇ ନାହିଁ,
ଧାରା ଶ୍ରାବଣ ଝରଝର ଝରେ
ପ୍ରିୟେ
ରହିଲ ଲୁଚି ଯେ କାହିଁ । ।

୪ - ସ୍ମୃତ-ରେଖା

ପ୍ରତିଟି ମୁହୂର୍ତ୍ତ ପଛେ ରହିଯାଏ
ପାଲଟେ ସ୍ମୃତର ରେଖା,
ଉଙ୍କି ମାରେ ପୁଣି ବେଳ ଅବେଳରେ
ଯେବେ ହୋଇଯାଏ ଦେଖା । ।

୫୪, ଆର୍ଯ୍ୟପଲ୍ଲୀ
କଟ୍ ଛକ, ପଟିଆ
ଭୁବନେଶ୍ୱର ୨୪

# ମୋ ପ୍ରିୟା



ବନୟ ମହାପାତ୍ର

ଫୁଲରେ ଫୁଲରେ ଯେତେକ ସୁରଭ,
ସବୁ ସେଇ ତୁମ ଅଙ୍ଗ ଲତାର,
ମହୁଆ ବାସ୍ନା ।
ପବନେ ପବନେ ଯେତେ ଗୁଂଜନର,
ସବୁ ସେଇ ତୁମ ଘନ ନଶ୍ୱାସେ,
କେତେ ବଶ୍ୱାସର କାହାଣୀ କୁହେ ।

ନଗାଡ଼ି ଦେଇଛ,
ଜୀବନର ଯେତେ ନର୍ଯାସ ତୁମ,
ଭରଦେଇ ତୁମେ ପିଆଲ୍ ମୋର ।
ଋଣି କରଦେଲ ହୃଦୟ ଋଣୀ ଗୋ,
ଭର ଦେଇଗଲ ଯେତେକ ଶକ୍ତ,
କ୍ଳାନ୍ତ ଡେଣାରେ ମୋର ।

ବେଳ ବାକ ନାହ,
ଉଡ଼ିବାକୁ ଅଛ ପଥ ବହୁତ ।
ଢଳ ଯାଏ ଯେବେ କ୍ଳାନ୍ତ ସୂର୍ଯ୍ୟ,
ଦୂର ଦଗବଳୟର
ପଣତ ତଳେ ।

ତୁମର ପଣତ ଆଂଚଳ କାନ,
ଢାଙ୍କି ଦଅ ଗୋ,
କ୍ଲାନ୍ତ ପଥିକ ଦେହେ । ।

ଭୁଲି ଯାଏ ଯେତେ,
ସାରା ଦିବସର ମାନ ଅପମାନ,
ବେଦନା ବ୍ୟଥା ।
ତୁମର ନରମ ହାତର ପରଶେ,
ପଲ୍ଲବ ଯାଏ ଶାଖାରେ ଶାଖାରେ,
ରୋମାଂଚର କେତେ,
କୁସୁମ ପେନ୍ଥା । ।

ନିଃସଙ୍ଗ ଏଇ ଶ୍ରାବଣ ସଂଧ୍ୟା,
ମନ ଝୁରେ ତୁମ ପଣତ ଛୁଇ,
ତୁମେ କି ଜାଣୁଚ ଏ ମନ ବେଦନା,
ବ୍ୟାକୁଳ କାହିଁକି ତୁମର ପାଇଁ । ।

ଶିବଶକ୍ତି ଆପାର୍ଟ୍‌ମେଣ୍ଟ୍‌ସ
ଫ୍ଲାଟ୍ ନଂ - ୨୨, (ଏମ୍‌ଆଇଜି)
ସେକ୍ଟର୍ - ଏ - ୯ , ପକେଟ୍ - ୪,
ଡି ଡି ଏ ଫ୍ଲାଟ୍‌ସ, ନରେଲା
ଦିଲ୍ଲୀ - ୧୧୦୦୪୦
ଦୂରଭାଷ : ୦ ୮୧୩୦୮୫୨୫୯୩

# ପାଞ୍ଚୋଟି ଏକପଦୀ



ଡମ୍ବରୁଧର ପଟ୍ଟନାୟକ

ଚଟ୍ ଫଣ୍ଡ
ବୋକା ଲୋକ, ସଂସ୍ଥା ଠକ !
ଆଜ ଜନମିଲ୍ ନବଜାତକ କ
ମାସ ଛଅଟାରେ
ହୋଇବ ନବଯୁବକ ?

ଗିରଫଦାର
ବଡ଼ ନେତା ବଡ଼ ପୋଲ !
ଜେଲ୍ ଗଲେ ତ ଆହୁର ସୁବଧା
ଲୋକଙ୍କର ପ୍ରଶ୍ନ-
ବାଣରୁ ତ ବର୍ତ୍ତିଗଲ ।

ମାଓବାଦୀ
ଭାରି ଭୟଙ୍କର ନେତା !
ପଗୃଶ ମୁଣ୍ଡକୁ ଗଡ଼େଇଛ ବୋଲି
ଗର୍ବରେ ଟେକ ମଥା

କହେ 'ମାନବକତା'ର କଥା ।

ପୁରସ୍କାର

ନାମ ବଡ଼ ଦାମ ଗ୍ରେଟ !

ଗ୍ରେଟଲୋକଙ୍କ କର ପୁରସ୍କାର ଧର

ମାଇପ ଆଗରେ

ମାରୁଥାଅ ବାହାସ୍ଫୋଟ ।

ଦେହଜୀବୀ

ଦେହ - ବିକା ବୈଧ ହେବ ?

'ଲିଭିଂ ଟୁଗେଦେର୍' ବୈଧ ହେଇଛି ତ

'ଯୌନ-ଶିକ୍ଷା'କୁ ବାଧ୍ୟତାମୂଳକ

କର ହେବ ଶୁଭ+ଲାଭ ।

ବାଣିଜ୍ୟକର ବିଭାଗ,

କର ନିର୍ଦ୍ଧାରଣ ଏକକ, ଗୁଣପୁର-୭୬୫୦୨୨

ଭ୍ରାମ୍ୟଭାଷ - ୯୪୩୮୭୧୦୮୧୧

ଇମେଲ୍ - dambaru4u@gmail.com

# ମୁଁ, ମାଆ ଓ ଗାଁ



ସ୍ୱାଭିମାନ ସାହୁ

ମୁଁ ଅଛି, ମା' ଅଛି ଓ ଗାଁ ଅଛି
ଗୁଡ଼ି ଆସିଛି ମୋ ସ୍ମୃତକୁ
ତା'ର ଆମ୍ବତୋଟା, ସୋରିଷ କ୍ଷେତରେ
ତା'ର ଅଙ୍କାବଙ୍କା ରାସ୍ତା
ପୋଖରୀ ହୁଡ଼ା ଓ ନଈ ତୁଠରେ
ବିତିଛି ମୋ ପିଲାଦିନ
ଯା'ଧୂଳି ବାଲିରେ ଖେଳ
ସାଙ୍ଗସାଥି ସହ ବୋହୁଚୋରୀ ଖେଳ
ଖୁଦୁରୁକୁଣୀ ପାଇଁ କଇଁକଢ଼ ତୋଳ
ମା'ଠୁ ଜନମି, ମା'କୁ ପାଇଲି
ମା'ଠୁ ଖାଇକି, ମା'ଠି ବଢ଼ିଲି
ତା' ପାଣି ପବନ ଆହା କି ମଧୁର
ମୋ ଶରୀରେ ସେତ ଅଦ୍ୟପି ବହୁଛି
ମୁଁ ଅଛି, ମା' ଅଛି ଓ ଗାଁ ଅଛି ।

ଆଜି ବି ମନେ ପଡ଼େ
ସେ ପୁରୁଣା ଘର କଥା
ମା' ହାତଧରି ମା' ଉପରେ ଗୁଲିବାର କଥା

ନଚେତ୍ ମା' ଦେହେ ଲୋଟି ଯିବାର କଥା
ଘର ପାଖେ ଥିବା ଥୁଣ୍ଟା ବରଗଛ
ସମୟ ସ୍ରୋତରେ ଭଙ୍ଗିଯାଇ
ମା'ଆଗେ ନୁଆଇଁଛି ମଥା
ବୋଧେ ମାଆ ଦେହେ ଲୋଟିଯାଇ
ପାଇଛି ଚରମ ସାନ୍ତ୍ୱନା
କିନ୍ତୁ ଏବେ ମୁଁ ଅଛି,
ଗାଁ ଅଛି ହେଲେ ମା' ନାହିଁ ।

ଗାଁ କଥା ଯେବେ ମନେ ପଡୁଥିଲା
ମା' ମୁହଁରେ ଗାଁ ପାଇଥିଲି
ଏବେ ମା'କୁ ଖୋଜୁଛି
ଗାଁରେ ବି ମୋ ମା' ନାହିଁ
ଅନୁତାପ କରେ ମୁଁ ଯେ
ସେଇ ଭୂଲଟେ ପାଇଁ
ଛାଡ଼ି ଆସିଲି ମା'କୁ କାହିଁପାଇଁ ?
ନୁଆଁଉଛି ମଥା ସେ ବର ପରି
ମା' ନାହିଁ କିନ୍ତୁ ମାତୃଭୂମି ଅଛି
ମୁଁ ନାହିଁ, ମା' ନାହିଁ କିନ୍ତୁ ଗାଁ ଅଛି ।

# ସଜଳ ଆଖିର... କଜଳ ଇଶାରା



ଦୀପକ ଷଡ଼ଙ୍ଗୀ

ମହୁମଖା ତୁମ ଓଠର ପରଶକୁ
ଓଠ ତ ମୋ ଝୁରୁଅଛି ।
ସଜଳ ଆଖିର ତୁମ କଜଳ ଇଶାରା
ମୋତେ ହାତଠାର ଡାକୁଅଛି ।
ତୁମ ମନ ବନେ ଫଗୁଣ ହସିଲେ
ମୋ ମନେ ମଳୟ ବହେ,
ଗୋଲାପି ଓଠରୁ ତୁମ ଝରିଲେ ମହୁ
ମୋ ମନ ମହୁଆ ହୁଏ ।
ତୁମ ବଗିଚ୍ଚର ବଉଳର ବାସ
ମହ ମହ ମହକୁଛି,
ସଜଳ ଆଖିର ତୁମ କଜଳ ଇଶାରା
ମୋତେ ଖାଲି ଡାକୁଅଛି ।
ତୁମ ସ୍ୱପ୍ନର ଜ୍ୟୋତ୍ସ୍ନା ଜୁଆର
ମୋ ମନେ ସପନ ଗ୍ଛଇ,
ଗନ୍ଧିନୀ ରାତିର ଚନ୍ଦନ ଶୀତଳେ
ଗୀତ କଏ ଯାଏ ଗାଇ ।
ସେଇ ଗୀତ ସୁରେ ଫୁଲର ଫଗୁଣ
ରଙ୍ଗ କେତେ ବୋଳୁଅଛି,
ସଜଳ ଆଖିର ତୁମ କଜଳ ଇଶାରା
ମୋତେ ହାତ ଠାରି ଡାକୁଅଛି ।

ଅଧ୍ୟାପକ,ରୋଲାଣ୍ଡ ଫାର୍ମାସୀ କଲେଜ
ଖୋଡାସିଂଗି, ବ୍ରହ୍ମପୁର – ୧୦
Email :sarangi.dipu@gmail.com

# ବହୁରୂପୀ ଶୀତ



ବରୁଣ କୁମାର ଦାସ

ଦେଖ, କେମିତି ସେକି ହେଉଛି ନିଜକୁ
କାଠପତ୍ରର ନିଆଁ ଝାସରେ
ଗ୍ଲେଟ ପିଲ୍ଙ୍କ ମେଳରେ ସାତ ସକାଳେ
ବନିଯାଇ ଅଶି ସେପାଶର ବୃଦ୍ଧ ।
ଏବେ ଆଉ ଖାତର ନାହିଁ କାହାର
ଫିଙ୍ଗି ଦେଉଛି ଦୂରକୁ କୁହୁଡ଼ି ଗୁଦର ।
ସୂର୍ଯ୍ୟ ଆକାଶରେ ଦେଖା ଦେବାପରେ
ଘାସରେ ପୋଛିଥିବା ଆଖିଲୁହ
ପାଲଟୁଛି ଅସଂଖ୍ୟ ମୁକ୍ତାର ସଂଭାର ।
ଟାଣ ଟାଣ ଖରାରେ ଆଉ କାହିଁ ଦିଶୁନି
ସେ ବୃଦ୍ଧ କି ତା ଗୁଦର ଅବା ଲୁହ
ସତେକି ସେ ଅଶରୀରି ବନିଯାଇ
ଘୁରି ବୁଲୁଛି ଏଠି ସେଠି
କେଉଁ ଏକ ଯାଦୁମନ୍ତ୍ରରେ ।
ଫେରୁଛି ସେ ଅଦୃଶ୍ୟ ବୃଦ୍ଧ
ସୂର୍ଯ୍ୟ ସହଳ ଢଳିଯିବାପରେ
ସଂଜସହ ସାଥୀ କରି
ମାଡ଼ି ଆସୁଛି ମହାବଳ ସାଜରେ ।

ଏବେ ତା'ଦେହରେ ସାତ ସିଂହର ବଳ

ଯୌବନର ରଣାହଂକାର ବୃଦ୍ଧ ଶରୀରରେ

ନୀରବ ଗତ ସହ

ପରସ୍ତ ପରସ୍ତ ନୀରୁତା ଅନ୍ଧାରେ

ଗ୍ରାସି ଗ୍ଗଲଛି ବାହାରେ ଭିତରେ

ସବୁକିଛି ସେଇ ଶୀତର ଅଧିକାରରେ ।

# ଆଉ ମୁଁ ଗୀତ ଗାଏନି



ଶାରଦା ପ୍ରସାଦ ପରଡ଼ା

ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି
ଯେଣୁ, ଚହ୍ଲା ମୁହଁଙ୍କ ଭିଡ଼ ଭିତରେ
ନିଜରେ କେହି ମିଳେନି;
ସବୁ ହସନ୍ତି ହସରେ ହସ
ପଛରେ ଦେଇ ବିଶ୍ୱାସେ ବିଷ
ତେଣୁ, ଦୁଃଖ କାହାକୁ କୁହେନି,
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ଯା ପାଇଁ ଦେଖେ ନିତ ସପନ
ରଙ୍ଗେ ବେରଙ୍ଗେ ହୋଇ ମଗନ
ଆଖି ଖୋଲିଲେ ନିଦ ଭାଙ୍ଗିଲେ
ତାକୁ ମୁଁ ଆଉ ପାଏନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ଯେଉଁଠି ଗଢ଼େ ଯେତେ ସମ୍ପର୍କ

ସବୁର ମୂଳେ ବଢ଼ଇ ସ୍ୱାର୍ଥ
ନିଃସ୍ୱାର୍ଥ ପ୍ରେମ କାହାକୁ ଏଠି
କେବେ କେଉଁଠି ପାଏନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ଜୀବନ ଏଠି ସଂଘର୍ଷ ଲାଗେ
ସମ୍ପତ୍ତି ମୋହ ଦୁର୍ବାର ଜାଗେ
ଧନ-ମାନର ଧାଁ ଧଉଡ଼େ
ଆଗକୁ ବଢ଼ିପାରେନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ଅଶାନ୍ତ ପଥେ ଶାନ୍ତକୁ ଖୋଜ
ଶାନ୍ତ କୁ ଖୋଜ ପାଏନି
ଟଙ୍କାକୁ ଖାଇ ଟଙ୍କାକୁ ପିଇ
ଟଙ୍କାରେ ଶୋଇପାରେନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ପଡ଼ିଲେ ଥକ ଦୁଃଖରେ ଧାଇଁ

ଖୋଜେ ମୁଁ କାନ୍ଧ ସାହାର୍ ପାଇଁ
ଅଭିମାନରେ ଆଉ କାହାକୁ
ସାହାର୍ ମାଗି ପାରେନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ମନରେ ଯେତେ ଅକୁହା କଥା
ସଂସାର ଦୁଃଖ ବିରହ ବ୍ୟଥା
ଶୁଣାଇବାକୁ ବିଶ୍ୱାସୀ ସାଥୀ
କାହାକୁ ଏଠି ପାଏନି
ବଡ଼ ବେଢ଼ଙ୍ଗ ଜୀବନ ମୋର
ଆଉ ମୁଁ ଗୀତ ଗାଏନି ।

ଅଧ୍ୟାପକ, ମେକାନିକାଲ୍ ଇଞ୍ଜିନିୟରିଂ
କୋଣାର୍କ ବିଜ୍ଞାନ ଓ ବୈଷୟିକ ମହାବିଦ୍ୟାଳୟ, ଖୋର୍ଦ୍ଧା

# କେମିତି କହ



ଲୀନା ମହାନ୍ତ

ତୋ ଦୁନିଆ ସିନା ତୁ ପାଇଗଲୁ
ମୋ ଦୁନିଆ ହେଲା ପର....
ଭଲ ପାଇବାରେ କେମିତି ଆସିଲା
ତୋ ମନରେ ଅବସ୍ତର...
ସାଥୀ ହେବୁ ବୋଲି ସାତ ଜନମକୁ
ଦେଇଥିଲୁ ମୋତେ କଥା,
ଏତେ ବଡ଼ ଏଇ ଦୁନିଆ ଭିଡ଼ରେ
କେମିତି କଲୁ ତୁ ଏକା...
ଗଢ଼ା ହୋଇଥିବା ତୋ ସାଥେ ଜୀବନ
ଏକା ଏକା ଭାଙ୍ଗିଦେଲୁ
ଅଲଗା ନଥିଲା ତୋ ମୋ ମନ
ନିଜେ ରାସ୍ତା ବାଛିନେଲୁ...
ତୋ ଦରଦ କଥା ଭୁଲିଗଲୁ ସିନା
ମୋ ଦରଦ ନ ଦେଖିଲୁ
କ୍ଷଣକେ ଭୁଲିଲୁ ଦେଇଥିବା କଥା
ସାତ ପର କରିଦେଲୁ...
ମୋ ପ୍ରେମରେ ବୋଧେ ରହିଗଲା ଊଣା
ହସି ହସି ଗଲୁ ରୁଷି
ଥକି ଗଲେ କିଏ ଦୁନିଆ ଭିଡ଼ରେ
ମୁଣ୍ଡ ମୋ ଦବ ଆଉଁସି !!

# ବାର୍ତ୍ତା



ପ୍ଲାବନୀ ଗୁରୁ

ବାର୍ତ୍ତାର ପ୍ରକଟ ଅନନ୍ତ କୋଷ

ବାର୍ତ୍ତାଧାରେ ପୁଣି ଜୀବନ ବଶେଷ

ମା' ବାର୍ତ୍ତାରେ ଥାଏ ସେନେହ ସରଗ

ବାପା ବାର୍ତ୍ତା ପୁଣି ଦେଖାଏ ମାର୍ଗ

ଭଉଣୀ ବାର୍ତ୍ତାରେ ଥାଏ କେବେ ମାଡ଼

ଭାଇ ବାର୍ତ୍ତା ଆଣେ ପ୍ରେମର ଝଡ଼

ଜେଜେମା ବାର୍ତ୍ତାରେ ଗପର ମହୁ

ଜେଜେ କହନ୍ତ ଯେ ଝରଏ ଲହୁ

ଦାଦାଙ୍କର ବାର୍ତ୍ତା ଆଦର ଭର୍

ଖୁଡ଼ି କଥା ଲାଗେ ମଧୁର ଧାର୍

ମାମୁଁଙ୍କ ବାର୍ତ୍ତାରେ ଥାଏ ଯେ ଗାଳ

ମାଈଁ ଶବ୍ଦ ଗୁନ୍ଥେ ପ୍ରେମର ମାଳ

ସାଥୀବାର୍ତ୍ତା ଯେ ଦେଖାଏ ସପନ

ଆଉ କେବେ ପୁଣି ହୃଦବନ୍ଧନ

ବନ୍ଧନର ବାର୍ତ୍ତା ଶିକୁଳ ସଙ୍ଗେ

ମହୁମାଛି ବାର୍ତ୍ତା ଫୁଲ ପରାଗେ

ଇଂରେଜୀ ନବବର୍ଷ ୨୦୧୭ ଶୁଭେଚ୍ଛା

# ଜୀବନ ସଳତା



ନୃସିଂହ ଚରଣ ବେହେରା

ଟିକେ ସ୍ୱର୍ଶ ପାଇଁ ଧାରାଶ୍ରାବଣର
ରହପାରେ ନାହିଁ ଗୃହିଁ ଗୃତକ
ପ୍ରତୀକ୍ଷାରେ ସଦା ଭରା ମୋ ନୟନ
ଝରୁଥାଏ ସଦା ମୋର ଲୋତକ ।
ମନେ ଜଳେ ମୋର ବରହର ନଆଁ
ଆସିବାକୁ ମୋର କେହ ନାହିଁ
ମୋ ମନରେ ଭରେ ଅସୁମାରୀ ଆଶା
ଜାଣେ ନା ଏ ଅପେକ୍ଷା କାହାପାଇଁ ।
ମଳୟ ପବନ ଆଣଇ ବସନ୍ତ
ଆଣି ପ୍ରତକୋଣେ ଦଏ ଢାଳ
ଜୀବନଟା ମୋର ମରୁଭୂମି ହେଲେ
ଦେହେ ଶିହରଣ ଯାଏ ଖେଳ ।
ଆତୁର ହୃଦୟ ନେଇ ନଇ ଧାଇଁଯାଏ
ସାଗର ସହତ ମିଶିବାକୁ
ନଃସଙ୍ଗତା ଭରା ଏଇ ଅସ୍ଥିର ମୋ ମନ
ବଚଳତ କଛି କହବାକୁ ।

ମୋର ସପନର କଳ୍ପନା ନାୟିକା

ସାଜେ କେବେ ମୋର କାବ୍ୟନାୟିକା

କାବ୍ୟ ନାୟିକା ମୋ ନିର୍ଜନ ଜୀବନେ

ଆଙ୍କେ କେତେ ଇନ୍ଦ୍ରଧନୁ ରେଖା ।

ଜୀବନ ସଳତା ମୋ ଜଳ ଜଳ ଆଜ

ପ୍ରତକ୍ଷଣେ ଗଲ୍ ପାଉଁଶ ହୋଇ

ସେଥିପାଇଁ କାହା ମନ ଆକାଶରେ

ଜଳିବାର ଆଶା ଆକାଂକ୍ଷ ନାହିଁ ।

ଭୋଇ ନଗର, ଭୁବନେଶ୍ୱର

# ତୁମେ



ଜୟଶ୍ରୀ ପଟ୍ଟନାୟକ

ପାଦତଳେ କଂକ୍ରିଟ୍ ଭୂମି, ଆଖିରେ ଥାକ ଥାକ ସମ୍ଭାବନାର ସ୍ୱପ୍ନ
ଶବ୍ଦ ଶତଦଳରେ ବାନ୍ଧିଥିବା ଦୁଇଘଡ଼ି ଭରସାର କଥା
ତନ୍ମୟରେ ତଲ୍ଲୀନ କରିଥିବା ଫଗୁଣର ଯେତେ ସବୁ ଶୃଙ୍ଗାର କଥା,
ପ୍ରେରଣାର ପର୍ବରେ ଗଢ଼ିଥିବା ସମୟ
ଛନ୍ଦି ହୋଇଯାଇଥିବା ଜୀବନର ଅବଶିଷ୍ଟ ଆୟୁଷ
ପୂର୍ଣ୍ଣୟର ପାର୍ବଣରେ ଗଢ଼ା ଯାଇଥିବା ପରିତୃପ୍ତ ସଂପର୍କ
ମିଛ ନୁହେଁ ବୋଲି ତ ସ୍ଥିତ ଅବସ୍ଥିତ ଭୁଲି ଯାଇଛି ପ୍ରତି ମୁହୂର୍ତ୍ତର
ଆଜି ଆଇନାରେ ଅଚିହ୍ନା ଲାଗୁଛି ନିଜ ମୁହଁ
ଯେଣୁ ମନରେ ପୋଥିରେ ଲେଖିଦେଇଛି ତୁମର ନାଆଁ
ଭାବନାରେ ସାଜିଛି ପାଷାଣ ପ୍ରତିମା
ମନ ଅଗଣାରେ ସଜାଇଦେଇଛି ତୁମ ପ୍ରୀତିମୟ ପ୍ରିୟତମ ଛବି ।
କବିତା ମନସ୍କ ହୋଇ ଲେଖି ଗ୍ଲଲଛି ହୃଦୟର କଥା
ଗ୍ଲତତଳେ ରଖି ନୀରବ ମନର ଅକୁହା ବ୍ୟଥା ।
ତୁମକୁ ମୋର ବୋଲି କହିବାରେ କରିନି କାର୍ପଣ୍ୟ
ଆଙ୍କିଦେବାରେ ଗୋଟି ଗୋଟି ସ୍ନେହ
ହୋଇନାହିଁ କେବେ ବି କୃପଣ ।

ମଧୁସୂଦନ ନଗର, ଜଟଣୀ

# ମୁଁ ନୁହେଁ ସୀତା



ପ୍ରତଭ୍ ପ୍ରିୟଦର୍ଶିନୀ

ମୂଳ ହନ୍ଦୀ ରଚନା - ଆଭ୍ ବୋଧିସତ୍ତ୍ୱ
ଭ୍ଷାନ୍ତର - ପ୍ରତଭ୍ ପ୍ରିୟଦର୍ଶିନୀ

ତୁମ ସହ ବନବାସ ଯିବ
କନ୍ଦମୂଳ ରେ କ୍ଷୁଧା ମେଣ୍ଟାଇବ
ସହବ ମୁଁ ଖର୍-ବର୍ଷା, ଦୁଃଖ-ସୁଖ
ତୁମର ବୋଲ କୁହାଇବ ନଜକୁ
ହେଲେ ସୀତା ନୁହେଁ ମୁଁ
ପଶିବନ ଧରିତ୍ରୀ ବକ୍ଷରେ...

ବାଣ୍ଟିନେବ ତୁମ ଯେତେ ସୁଖ,ଦୁଃଖ
ମୋ'ର ବ ଜଣାଇବ
ତୁମ ସାଙ୍ଗେ ମିଶି ଗ୍ଲୁଥିବ ସିନା
ତୁମ ପାଦଚହ୍ନ କୁ ରସ୍ତା ନ ଭ୍ବବ
କ୍ଷତ କ'ଣ, ଯଦ ଅବା ହୁଏ ବାଟବଣା
ନଜ ପାଇଁ ପଥ ନଜେ ଖୋଜନେବ
ମୁଁ ସୀତା ନୁହେଁ
ପଶିବନ ଧରିତ୍ରୀ ବକ୍ଷେରେ...

ହଁ...ସୀତା ନୁହେଁ ମୁଁ
ପଶିବନି ମୁଁ ଧରଣୀ ବୁକୁରେ
ତୁମର ସବୁ ନା କୁ ନା କହିବ,
ନା ତୁମ ସବୁ ହଁ ରେ ହଁ ମିଳେଇବ
ମୁଁ ନୁହେଁ ସୀତା
ଧରିତ୍ରୀ ବକ୍ଷେ ନ ପଶିବ...

ମୁଁ ଆବିଷ୍କୃତ ହୋଇନି ମାଟିରୁ,
ତୁମଭଳି ମୁଁ ବି ଜନ୍ମିଛି ମାତୃଗର୍ଭୁ
ଜନକଙ୍କୁ ମୋ'ର, ମିଳି ମୁଁ ନଥିଲି
ଏମିତି କେଉଁଠି ବାଟେଘାଟେ
ଅବା କେଉଁ ବଣ ବୁଦା କ୍ଷେତ ଧାରେ
କେଉଁ ଏକ ମଞ୍ଜୁସା ବା ମାଟିହାଣ୍ଡି ମଧ୍ୟେ...

ବଢିଥିଲି ମୁଁ ବି ଗର୍ଭରେ ନଅ ମାସ
ମା ଯେବେ ଦେଇଥିଲା ଜନ୍ମ
ବାଜିଲାନି ଶୁଭଶଙ୍ଖ
ଶୁଭିଲାନି ଆନନ୍ଦର କୋଳାହଳ
ନ ହେଉ, କ'ଣ ହେଲା ?
ଏ ସବୁଠୁ ଜୋରଥିଲା
ମୋ କୁଆଁ କୁଆଁ ରବ
ଆକାଶରୁ ଖସିପଡିନି ମୁଁ ଏ ପୃଥିବୀରେ

କମ୍ବା ପଥର ରୁ ହେଇନ ଖୋଦେଇ...

ମୁଁ ବ ମୋ ବାପାଙ୍କ ଗେହ୍ଲୀ
ମା ର ଅଲଅଳ
ଯେତକ ପୋଡିଜଳ ନଥିଲ ମୁଁ
ଅଗ୍ନିପରୀକ୍ଷା ର ଲେଲୀହାନ ଶିଖାରେ
ତା'ଠୁ ଢେର୍ ବେଶୀ ଜଳାଇଲ୍ ମୋତେ
ମୋ ସତୀତ୍ୱ ରେ ସନ୍ଦେହ ତୁମର
ଆଉ ସେପାଇଁ ଅଗ୍ନିପରୀକ୍ଷା ର ଆୟୋଜନ...

ପଗ୍ଗରୁଛ ଆଜ ମୁଁ ତୁମକୁ
କାହିଁକ କାଟିଲ ସୁର୍ପଣଖା ନାକ ?
ସେ ତ ଗୃହିଁଥିଲ୍ ସାମାନ୍ୟ ସୋହାଗ ତୁମର
ପଠାଇଲ କାହିଁ ତାକୁ ଲକ୍ଷ୍ମଣ ପାଖକୁ ?
କାହିଁକ କଲ ତା'ରେ ଉପହାସ ?
ସେ ରାକ୍ଷସୀ ଥିଲାବୋଲ ! ! !
ତା'ର କ ନଥିଲା ମର୍ଯ୍ୟାଦା ?
ତା ମର୍ଯ୍ୟାଦା ରକ୍ଷା, ତୁମ ଲାଗି
ନଥିଲା କ ମର୍ଯ୍ୟାଦୋଚତ କାର୍ଯ୍ୟ ?
ତୁମେ ପର ଥିଲ ପୁରୁଷୋତ୍ତମ !
ଗୋଟାଏ ନାରୀ ର ନାକ କାଟି
ରାବଣ ଠୁ କ'ଣ କମ୍ ଥିଲ ତୁମେ ?

ତୁମେ ତା'ର ଅପମାନ କଲ,
ଆଉ ଗବଣ...ମୋ'ର

ଛଳନା ରେ ହରିଥିଲ ମୋତେ
କରି କେତେ ବଳର ପ୍ରୟୋଗ
ସ୍ୱେଚ୍ଛାରେ ହସି ହସି ଯାଇତ ନଥିଲି
ମୁଁ ଲଙ୍କା ବୁଲିବାକୁ ? ? ?
ଯାଇଥିଲି କାନ୍ଦି କାନ୍ଦି
ବିକଳରେ ଡାକି ରାଘବ ରାଘବ।
ତେବେ ମୋ ଠି ପ୍ରଶ୍ନଚିହ୍ନ କିଆଁ ?
ତୁମେ କରିପାରିନଥିଲ ମୋ ରକ୍ଷା,
ମୁଁ ତେବେ ପରୀକ୍ଷା ଦେବି କିଆଁ ?

ସହଭାଗି ହୋଇଥିଲି ତୁମ ସବୁ ସୁଖେ ଦୁଃଖେ
ତୁମେ କିନ୍ତୁ ବାଣ୍ଟିଲନି ମୋ'ର ଗୋଟାଏ ବି କଷ୍ଟ
ତୁମେ ପରା ଅନ୍ତର୍ଯ୍ୟାମୀ ! ! !
ଗଛପତ୍ର ରୁ ବି ପଢି ପାରିଥାନ୍ତ ମୋ ବ୍ୟଥା
ମନକଥା ସବୁ ଜାଣିପାରି ତୁମେ
ଶୁଣି ପାରିଲନି ତେବେ କାହିଁକି
ମୋ ଆକୁଳ ଚିତ୍କାର ?

ମୋତେ ଲାଞ୍ଛିତ ଅପମାନିତ ତିରସ୍କୃତ କଲ

ପୂର୍ଣ୍ଣ ମର୍ଯ୍ୟାଦା ସହକାରେ

ବତାଡିତ କଲ ମୋତେ ଘରୁ

ପୂର୍ଣ୍ଣ ମର୍ଯ୍ୟଦା ସହକାରେ

ମୁଁ ଯଦ ବନବାସେ ଯାଇଥାନ୍ତ କାନ୍ଦି କାନ୍ଦି

ତେବେକ, ମର୍ଯ୍ୟାଦା ପୁରୁଷୋତ୍ତମ ହୋଇଥାନ୍ତ ତୁମେ ?

ମୋ କେତେ ପ୍ରଶ୍ନର ଉତ୍ତର ଦେବ ତୁମେ ?

ଯାହା ହେଲ୍, ହୋଇଗଲ୍ ଭବ

ମୁଁ ଚୁପ୍ ରହଲ.....

ମୁଁ ଏବେ ସୀତା ନୁହେଁ

ତୁମେ ଦେଖେଇଥିବା ରାସ୍ତା

ମୋ ଲ୍ଗି ନୁହେଁ ଏକକ ବକଳ୍ପ

ମୋ ସୁଖ-ଦୁଃଖ ମୁଁ ଏକାକୀ ସହବ

ପ୍ରତଦନ, ପ୍ରତ ମୁହୂର୍ତ୍ତ ତୁମକୁ ମନେପକାଇବ

କନ୍ତୁ.....

ଧରତ୍ରୀ ବକ୍ଷେ ନ  ପଶିବ

ମୁଁ ସୀତା ନୁହେଁ

ବୁହାଇବ ନାହିଁ ଅଶ୍ରୁ ର  ନଦୀ

ସୀତା ନୁହେଁ ମୁଁ

ଧରଣୀ ପଣତେ ମୁହଁ ଲୁଚେଇ

ତା ବକ୍ଷେ ନ ପଶିବ.....

# ଚର୍ଯ୍ୟା ଗୀତକୋଷ



ଅଧ୍ୟାପିକା ରଞ୍ଜିତା ପାତ୍ର

## ଲଖିତ ସାହତ୍ୟର ଆଦମ ନଦର୍ଶନ : ଚର୍ଯ୍ୟାଗୀତ କୋଷ

ଲଖିତ ଓଡ଼ିଆ ଭାଷା ଓ ସାହତ୍ୟର ଆଦମ ନଦର୍ଶନ ହେଉଛ ଚର୍ଯ୍ୟାଗୀତ କୋଷ । କେବଳ ଓଡ଼ିଆ ଭାଷାରେ ନୁହେଁ ବରଂ ଅନ୍ୟାନ୍ୟ ସମସ୍ତ ସର୍ବଭାରତୀୟ ଭାଷାରେ ମଧ ଚର୍ଯ୍ୟାଗୀତ କୋଷକୁ ଆଦମ ନଦର୍ଶନ ଭାବରେ ଗ୍ରହଣ କରାଯାଉଛ । ତେଣୁ ପୂର୍ବଭାରତୀୟ ଭାଷାର ବହୁ ଆଲୋଚକ ଓ ସମାଲୋଚକମାନେ ଏହ ଗୀତକୋଷକୁ ବଭନ୍ନ ନାମରେ ଗ୍ରହଣ କର ଆଲୋଚନା କରଛନ୍ତ । ଚର୍ଯ୍ୟାଗୀତକୋଷରେ ଗୋଟିଏ ପୋଥିର ନାମ 'ଚର୍ଯ୍ୟାଚର୍ଯ୍ୟ ବନଚୟ' ଥିବାରୁ ଏହ ଗୀତକୋଷକୁ ଚର୍ଯ୍ୟାପଦ ଭାବରେ ଗ୍ରହଣ କରାଯାଏ ।

ସର୍ବପ୍ରଥମେ ୧୯୦୭ ମସିହାରେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ନେପାଳ ଗ୍ରନ୍ଥାଗାରରୁ ଏହ ଚର୍ଯ୍ୟାଗୀତକୋଷକୁ ଆବଷ୍କାର କରଥିଲେ । ଦୀର୍ଘ ଆଠବର୍ଷ ପରେ ଅର୍ଥାତ ୧୯୧୬ ମସିହାରେ ପାଠୋଦ୍ଧାର କର ପୁସ୍ତକଟିକୁ ପ୍ରକାଶିତ କଲେ । ଉକ୍ତ ପୁସ୍ତକର ନାମ ଦେଲେ - 'ହଜାର ବଛରେର ପୁରୁନୋ ବାଙ୍ଗଲଭାଷୀୟ ବୌଦ୍ଧଗାନ ଓ ଦୋହା' । ଲୋକ ଲୋଚନକୁ ଆସିବାର ବହୁ ପୂର୍ବରୁ ଚର୍ଯ୍ୟା ସାହତ୍ୟର ଜନ୍ମ । ଏହାର ରଚନା ସମୟକୁ ବଭନ୍ନ ସମାଲୋଚକ ଓ ଆଲୋଚକମାନେ ଖ୍ରୀ.ଅ. ୭୦୦ ରୁ

ଖ୍ରୀ.ଅ. ୧୨୦୦ ମଧ୍ୟରେ ସୀମିତ ବୋଲି କହିଛନ୍ତି । ବହୁ ଗବେଷକ, ଆଲୋଚକ ଓ ସମାଲୋଚକ ମାନେ ମୂଳ ଚର୍ଯ୍ୟାଗୀତକୋଷର ଶୁଦ୍ଧ ସମ୍ପାଦନା କରିବାର ଚେଷ୍ଟା କରିଛନ୍ତି ।

ସହଜିଆ ବୌଦ୍ଧ ଧର୍ମାବଲମ୍ବୀ ମାନଙ୍କର ତାତ୍ତ୍ୱିକବ୍ୟାଖ୍ୟା ଚର୍ଯ୍ୟାଗୀତରେ ପ୍ରକାଶିତ । ବୌଦ୍ଧଧର୍ମ ତନ୍ତ୍ରରେ ଅଭିଜ୍ଞ ମୁନିଦତ୍ତଙ୍କ ଦ୍ୱାରା ଚର୍ଯ୍ୟାଗୀତର ସଂସ୍କୃତ ଟିକା ରଚିତ ହୋଇଥିବାରୁ ଚର୍ଯ୍ୟାଗୀତର ତାତ୍ତ୍ୱିକ ବ୍ୟାଖ୍ୟା ସମ୍ଭବ ହୋଇଛି । ନଚେତ, ଚର୍ଯ୍ୟାଗୀତର ସଠିକ ବ୍ୟାଖ୍ୟା ଖୁବ୍ କଠିନ୍ ହୋଇଥାନ୍ତା ।

ଚର୍ଯ୍ୟାଗୀତକୋଷର ଶୁଦ୍ଧ ସମ୍ପାଦନା କ୍ଷେତ୍ରରେ ପ୍ରାଥମିକ ଭାବେ ପ୍ରବୋଧ ଚନ୍ଦ୍ର ବାଗଚି ଓ ଶଶିଭୂଷଣ ଦତ୍ତଗୁପ୍ତଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଏହା ବ୍ୟାତୀତ ବହୁପୂର୍ବରୁ ମୁନିଦାସଙ୍କ ଦ୍ୱାରା ଚର୍ଯ୍ୟାଗୀତକୋଷର ସଂସ୍କୃତ ଟିକା ଚର୍ଯ୍ୟା ସାହିତ୍ୟକୁ ସ୍ପଷ୍ଟ ଓ ସମୃଦ୍ଧ କରେ । ପରବର୍ତ୍ତୀ ସମୟରେ ବହୁ ଗବେଷକମାନେ ଚର୍ଯ୍ୟାଗୀତକୋଷକୁ ପାଠୋଦ୍ଧାର କରି ବିଶ୍ଲେଷଣ କରିଛନ୍ତି । ନୂତନ ତତ୍ତ୍ୱ ଓ ତଥ୍ୟ ପ୍ରଦାନରେ ଆଜି ମଧ୍ୟ ଚର୍ଯ୍ୟାଗୀତକୋଷର ଗବେଷଣାତ୍ମକ ବିଶ୍ଲେଷଣର ଆବଶ୍ୟକତା ରହିଛି ।

ଗବେଷକ ଓ ସମାଲୋଚକ ମାନେ ଚର୍ଯ୍ୟାଗୀତକୋଷର ପାଠୋଦ୍ଧାର ଓ ବିଶ୍ଲେଷଣ କରି ନିମ୍ନୋକ୍ତ ନାମରେ ଆଲୋଚନା କରିଛନ୍ତି । ଚର୍ଯ୍ୟାଗୀତର ଆଦି ଆବିଷ୍କର୍ତ୍ତା ମହାମୋହ ହରପ୍ରସାଦ ଶାସ୍ତ୍ରୀ 'ବୌଦ୍ଧଗାନ ଓ ଦୋହା' ନାମରେ, ଡ଼: ପ୍ରବୋଧ ଚନ୍ଦ୍ର ବାଗଚି ଓ ସୁକୁମାର୍ ସେନ୍ ଯଥା କ୍ରମେ - 'ଚର୍ଯ୍ୟାଗୀତି' ଓ 'ଚର୍ଯ୍ୟାଗୀତି ପଦାବଳୀ' ନାମରେ ଗ୍ରହଣ କରିଛନ୍ତି । ପଣ୍ଡିତ ବିଧୁଶେଖର ଶାସ୍ତ୍ରୀ ଓ କରୁଣାକର କର 'ଆଷ୍ଚର୍ଯ୍ୟ ଚର୍ଯ୍ୟାଶ୍ଚୟ' ନାମରେ ଆଲୋଚନା କରିଛନ୍ତି । ଖଗେଶ୍ୱର ମହାପାତ୍ର 'ଚର୍ଯ୍ୟାଗୀତିକା' ନାମରେ ନାମିତ କରିଛନ୍ତି । ଶଶୀଭୂଷଣ ଦାଶଗୁପ୍ତ

ନୂତନ ଚର୍ଯ୍ୟାପଦ ଆବିଷ୍କାର କରି 'ନବଚର୍ଯ୍ୟାପଦ' ନାମଦେଇ ଆଲୋଚନା କରିଛନ୍ତି । ରାହୁଲ ସାଂକୃତାୟନ ଚର୍ଯ୍ୟା ଶବ୍ଦଟିକୁ 'ଆଚରଣ' ଅର୍ଥରେ ଗ୍ରହଣ କରିଛନ୍ତି । ଏହି ଆଚରଣ ଶବ୍ଦଟି ଯୋଗସାଧନାରୁ ବିଭିନ୍ନ ଆଚରଣକୁ ବୁଝେଇଥାଏ ଏବଂ ଏହା ଦ୍ୱିଅର୍ଥବୋଧକ । ଗୋଟିଏ ବାହ୍ୟ ଅର୍ଥ ଓ ଅନ୍ୟଟି ଗୁଢ଼ ଅର୍ଥ ।

ଚବିଶି ଜଣ ସିଦ୍ଧାଚାର୍ଯ୍ୟଙ୍କ ଦ୍ୱାରା ଚର୍ଯ୍ୟାଗୀତିକୋଷ ରଚିତ । ପ୍ରତ୍ୟେକ ଗୀତିର ଶେଷରେ ଗୀତିକାରଙ୍କ ନାମ ଉଲ୍ଲେଖ ରହିଛି । ତେଣୁ ଗୀତିର ସ୍ରଷ୍ଟାଙ୍କୁ ସହଜରେ ଜାଣିହୁଏ । ସେମାନଙ୍କ ମଧ୍ୟରେ ଲୁଇପାଦ, ଶବରୀପାଦ, ସରହପାଦ, ଭୁସୁକୁପାଦ, ଶାନ୍ତିପାଦ, ଦାରିକାପାଦ, କାହ୍ନୁପାଦଙ୍କ ଏକାଧିକ ଗୀତ ସଂଗୃହୀତ ହୋଇଛି । ଚର୍ଯ୍ୟାଗୀତିକାରଙ୍କ ମଧ୍ୟରୁ କେତେଜଣ ଗୁରୁଶିଷ୍ୟ ଭାବରେ ମଧ୍ୟ ପରିଚିତ । କେତେ ଜଣଙ୍କ ନାମ ଶୈବ, ନାଥ, ତାନ୍ତ୍ରିକ ବୌଦ୍ଧ ଧର୍ମର ଚଉରାଶି ଧର୍ମଗୁରୁଙ୍କ ତାଲିକାରେ ଅନ୍ତର୍ଭୁକ୍ତ । ଗବେଷକ ଓ ସମାଲୋଚକଙ୍କ ମତରେ ଏହି ଧର୍ମଗୁରୁମାନେ ବିଭିନ୍ନ ଅଞ୍ଚଳର ବୋଲି ଯୁକ୍ତି ବାଢ଼ିଛନ୍ତି । ଓଡ଼ିଶା, ବଙ୍ଗଳା, ମିଥିଳାର ଆଦିମ ଅଧିବାସୀ ଭାବରେ ସିଦ୍ଧାଚାର୍ଯ୍ୟମାନଙ୍କୁ ଗ୍ରହଣ କରିଛନ୍ତି । ଧର୍ମ ଗ୍ରହଣ ପରେ ଏମାନେ ସାଙ୍କେତିକ ନାମ ଗ୍ରହଣ ସହିତ 'ପାଦ' ଶବ୍ଦ ସମ୍ମାନାର୍ଥେ ବ୍ୟବହାର କରିଥାନ୍ତି ।

ଚର୍ଯ୍ୟାଗୀତିକୋଷର ରଚୟିତାଗଣ ହେଲେ ବୌଦ୍ଧ ସହଜିଆ ମାର୍ଗଦର୍ଶୀ । ତେଣୁ ଚର୍ଯ୍ୟାଗୀତିକୁ ବୁଝିବାକୁ ହେଲେ ଧ୍ୟାନ, ଯୋଗ, ତନ୍ତ୍ରର ଜ୍ଞାନ ଆବଶ୍ୟକ । ବିଭିନ୍ନ ଆଲୋଚକମାନଙ୍କର ତାତ୍ତ୍ୱିକ ବ୍ୟାଖ୍ୟାରୁ ମନେ ହୁଏ, ଧର୍ମର ଗୁଢ଼ତତ୍ତ୍ୱକୁ ଲୁକ୍କାୟିତ କରିବା ଉଦ୍ଦେଶ୍ୟରେ ଚର୍ଯ୍ୟାଗୀତିର ରଚନା କରାଯାଇଛି । ତେଣୁ କେହି କେହି ସମାଲୋଚକ 'ସନ୍ଧ୍ୟାଭାଷା' ଭାବରେ ନାମିତ କରିଛନ୍ତି ।

'ତେଙ୍ଗୁର' ଓ 'ଚକ୍ରସମ୍ଭାରତନ୍ତ୍ର'ରେ ସିଦ୍ଧାଚାର୍ଯ୍ୟମାନଙ୍କର ସମୟକ୍ରମର ବିବରଣୀ ରହିଛି । ସମୟାନୁସାରେ ସରହପାଙ୍କୁ ବୟୋଜ୍ୟୋଷ୍ଠ କବିଭାବରେ ଗ୍ରହଣ କରାଯାଇଛି । ନିମ୍ନରେ ସମୟାନୁକ୍ରମିକ ତାଲିକା ପ୍ରସ୍ତୁତ କରାଗଲା ।

ସରହପା (୬୩୩ ଖ୍ରୀଷ୍ଟାବ୍ଦ)

ଶବରୀପା (୬୫୩ ଖ୍ରୀଷ୍ଟାବ୍ଦ)

ଲୁଇପା (୬୬୯ ଖ୍ରୀଷ୍ଟାବ୍ଦ)

ଜାଳନ୍ଧରୀପା (୭୦୫ ଖ୍ରୀଷ୍ଟାବ୍ଦ)

କାହ୍ନୁପା (୭୧୭ ଖ୍ରୀଷ୍ଟାବ୍ଦ)

ନିମ୍ନରେ ସିଦ୍ଧାଚାର୍ଯ୍ୟମାନଙ୍କୁ ଆଲୋଚନାର ପରିସରଭୁକ୍ତ କରାଗଲା ।

ସରହପା (୮ମ - ୯ମ ଶତାବ୍ଦୀ)

କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମ । ଶର ପ୍ରସ୍ତୁତକାରୀ କନ୍ୟାକୁ ବିବାହ କରିବାପରେ ସାଙ୍କେତିକ ନାମ ସରହପା ହୋଇଛି । ତାଙ୍କର ଏକାଧିକ ନାମ ଥିଲା, ସରହ, ମହାଶବର, ଆଚାର୍ଯ୍ୟ, ରାହୁଲଭଦ୍ର, ମହାସେନୀ ଓ ସରୋରୁଦ୍ରବ୍ରଜ ।

ଲାମା ତାରାନାଥଙ୍କ ବିବରଣୀ ଅନୁସାରେ ସେ ଓଡ଼ିଶାବାସୀ ଥିଲେ । ମାତ୍ର ପାଗ୍-ସାମ୍-ଜୋଙ୍ଗ୍-କାଙ୍ଗ୍‌ଙ୍କ ଅନୁସାରେ ସେ ପ୍ରାଚ୍ୟଦେଶର ବୋଲି ଗ୍ରହଣ କରାଯାଇଛି ।

ସେ ଜାତିଭେଦର ବିରୋଧ କରୁଥିଲେ । ତାଙ୍କ ମତରେ ମନୁଷ୍ୟ ଗୋଟିଏ ଜାତି । ତାଙ୍କର 'ଦୋହାକୋଷ' ପୁସ୍ତକ ସିଦ୍ଧ ସାହିତ୍ୟକୁ ସମୃଦ୍ଧ କରିଛି ।

କ୍ରମଶଃ...

ଅଧ୍ୟାପିକା, ସ୍ନାତକୋତ୍ତର ଓଡ଼ିଆଭାଷା ଓ ସାହିତ୍ୟ ବିଭାଗ
ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ, ତକତପୁର, ବାରିପଦା, ୭୫୭୦୦୩

# ଭଗବାନ



ସୁଚରିତା ସାବତ

ବୈଶାଖ ମାସର ମୁଣ୍ଡ ଫଟା ଖରା । କୁଆ କୋଇଲିର ଶୋର ଶବ୍ଦ ନାହିଁ ।  ଦାଣ୍ଡରେ ଶୁଭିଲା ଆଠ ବର୍ଷର ବାଳକର ଡାକ । ଖରାକୁ ଖାତିର ନକରି ଖେଳନା ବିକିବା ଲାଗି ବୁଲୁଛି ସାହିକୁ ସାହି । କାନ୍ଧରେ ଖେଳନାର ବୋଝ । ଖାଲି ପାଦ । ତାତକୁ ସହ୍ୟ ନକରି ସାହିର ଗଛ ଛାଇ ଜାଗାରେ ହାଲିଆ ମାରୁଥିଲା ସେ । ଜଣେ ଭଦ୍ର ବ୍ୟକ୍ତି ତା ସାମ୍ନାକୁ ଆସି ପୁରୁଣା ଚପଲ ହଳେ ତା ଆଡ଼କୁ ବଢ଼ାଇଲେ । ବିନା ଦ୍ୱିଧାରେ ସେ ନେଇ ପିନ୍ଧିଲା ତାକୁ । ଠିକ ମାପ ହେଉଛି ।ଓଠରେ ଖେଳିଗଲା ହସ ।

ଲୋକଟି ଆଡ଼କୁ ଚାହିଁ କହିଲା ସେ ବାଳକ - ବାବୁ ଆପଣ ଭଗବାନ !

ଲୋକଟି କହିଲେ – ମୁଁ ଭଗବାନ ନୁହେଁ । ମୁଁ ଜଣେ ସାଧାରଣ ମଣିଷ ।ଏଇଠି ମୋ ଘର ।

ପିଲାଟି କହିଲା – କାଲି ମନ୍ଦିର ପିଣ୍ଡାରେ ଶୋଇଲାବେଳେ ଭଗବାନଙ୍କୁ କହିଥିଲି । ହେ ଭଗବାନ ! ମୋ ପାଦକୁ ହଳେ ଚପଲ ଦିଅ । ଖରାରେ ବୁଲି ବିକିଲାବେଳେ ପାଦ ପୋଡ଼ିଯାଉଛି । ଆଉ ଆଜି ଦେଖ ମୋତେ ଚପଲ ମିଳିଛି । ଆପଣ ଭଗବାନ ନୁହଁନ୍ତି ତ ଆଉ କିଏ ?

ଲୋକଟି ମୁହଁରେ କହିବାକୁ ଆଉ କିଛି ଭାଷା ନଥିଲା । ପିଲାଟିକୁ ପୁରିଲା ଆଖିରେ ଦେଖୁଥିଲେ ସେ ଠିକ ମନ୍ଦିରରେ ଠିଆ ହୋଇଥିବା ମୂର୍ତ୍ତିଟି ଭଳି ।

ଅଧାପିକା, ଅର୍ଥନୀତି ବିଭାଗ, ମହିଳା ମହାବିଦ୍ୟାଳୟ, ରାୟଗଡ-୭୬୫୦୦୧

# ଉଦ୍ୟାନମ୍ : ମଧ୍ୟକଳିଙ୍ଗର ମୂକସାକ୍ଷୀ



ଲିଙ୍ଗରାଜ ପ୍ରସାଦ ପଟ୍ଟନାୟକ

ଭାରତୀୟ ଉପଦ୍ୱୀପର ପୂର୍ବଘାଟ ପର୍ବତମାଳା ଏବଂ ବଙ୍ଗୋପସାଗର ମଧ୍ୟବର୍ତ୍ତୀ, ଉତ୍ତର ଆନ୍ଧ୍ରପ୍ରଦେଶର ଏହି ବିସ୍ତୃତ ଅଞ୍ଚଳକୁ ଉଦ୍ୟାନମ୍ ବୋଲି କୁହାଯାଏ । ଜୈବ ବିବିଧତା, ଐତିହାସିକ କୀର୍ତ୍ତିରାଜି, ପୌରାଣିକ ମନ୍ଦିର ଆଦିର ସମାହାର, ଏହି ଅଞ୍ଚଳ ଅତୀତର ମଧ୍ୟକଳିଙ୍ଗ ବୋଲି ଐତିହାସିକ ମାନେ ମତ ଦେଇଥାନ୍ତି । ଅନେକ ନଦନଦୀରେ ପରିପୂର୍ଣ୍ଣ ଏହି ଅଞ୍ଚଳର ମୃତ୍ତିକା କୃଷୋପଯୋଗୀ ହୋଇଥିବାରୁ ଏହି ଅଞ୍ଚଳରେ ଅନେକ ପ୍ରକାରର ଖାଦ୍ୟଶସ୍ୟ, ଫଳମୂଳ, ପନିପରିବା ଆଦି କୃଷି କରାଯାଏ । ସମୁଦାୟ ସମୁଦ୍ରକୂଳ ଅଞ୍ଚଳ ଅତ୍ୟନ୍ତ ମନୋରମ ହୋଇଥିବା ହେତୁ ଏହି ଅଞ୍ଚଳକୁ ବର୍ଷସାରା ପର୍ଯ୍ୟଟକମାନଙ୍କ ସୁଅ ଛୁଟିଥାଏ ।

## ଉଦ୍ୟାନମ୍ ଅଞ୍ଚଳର ଧାର୍ମିକ ମହତ୍ତ୍ୱ



ଉଦ୍ୟାନମ୍ ଅଞ୍ଚଳ ଅନ୍ତର୍ଭୁକ୍ତ ମହେନ୍ଦ୍ରଗିରି ଅତୀତରୁ କୁଳଗିରି ବା କୁଳ ପର୍ବତ ଭାବରେ ସମ୍ମାନିତ ହୋଇଅଛି । ଏହି ପର୍ବତ ଅତ୍ୟନ୍ତ ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ, ସୁଉଚ୍ଚ ପର୍ବତଶୃଙ୍ଗ, ବିସ୍ତୃତ ସବୁଜ ଉପତ୍ୟାକା, ଘଞ୍ଚଜଙ୍ଗଲ ଆଦିରେ ସମୃଦ୍ଧ ଏହି ଅଞ୍ଚଳ

ଅନେକ ସାଧୁସନ୍ଥଙ୍କୁ ଏହି ଅଞ୍ଚଳକୁ ଆକର୍ଷିତ କରିଥାଏ । ଏହି ପାର୍ବତ୍ୟାଞ୍ଚଳରେ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଅନେକ ସାଧୁସନ୍ଥଙ୍କ ଆଗମନ ହୋଇଛି ଏବଂ ସେଇଥିପାଇଁ ଏହି ଅଞ୍ଚଳ ଧାର୍ମିକ ଦୃଷ୍ଟିକୋଣରୁ ପ୍ରସିଦ୍ଧି ଲାଭ କରିଛି । ମହେନ୍ଦ୍ରଗିରିରୁ ନିଃସୃତ ମହେନ୍ଦତନୟା ନଦୀ ଉପତ୍ୟାକାରେ ଅନେକ ଧାର୍ମିକ ସ୍ଥଳ ରହିଛି । ଏହି ଅଞ୍ଚଳରେ ନଦୀର ଜଳ, ସମୁଦ୍ର, ଉଦ୍ୟାନ, ଆୟୁର୍ବେଦୀୟ ବୃକ୍ଷଲତା ଆଦି ଅନେକ ସାଧୁସନ୍ଥଙ୍କୁ ଆକର୍ଷିତ କରିଛି ।



ଅତୀତରେ ଏହି ସ୍ଥାନର ବିଶେଷ ଉଲ୍ଲେଖ ମହାନ ଗ୍ରନ୍ଥ ରାମାୟଣ ଏବଂ ମହାଭାରତରେ ମଧ୍ୟ ଦେଖିବାକୁ ମିଳିଥାଏ ବୋଲି ଐତିହାସିକ ମାନେ ମତ ଦେଇଛନ୍ତି । ପଚାଙ୍ଗୀ, ବରୁଆ ଏବଂ ପଳାଶପୁରମ୍ ଅଞ୍ଚଳର ଅନେକ ମନ୍ଦିର ପାଣ୍ଡବମାନଙ୍କ ଦ୍ୱାରା ନିର୍ମିତ ହୋଇଛି ବୋଲି ଲୋକମତ ଶୁଣିବାକୁ ମିଳିଥାଏ । ମହାଭାରତରେ ପାଣ୍ଡବମାନଙ୍କ ଅଜ୍ଞାତବାସ ସମୟରେ ଅଧିକାଂଶ ସମୟ ସେମାନେ ଏହି ସ୍ଥାନରେ ରହିଥିବା କଥା ଅନେକ ବିଶ୍ୱାସ କରନ୍ତି । ମହେନ୍ଦ୍ରଗିରି ଉପରେ ଥିବା ମନ୍ଦିର ପାଣ୍ଡବମାନେ ହିଁ ନିର୍ମାଣ କରିଛନ୍ତି ବୋଲି ଦୃଢ଼ତାର ସହ ଅନେକ ଦାବୀ କରନ୍ତି । ଏବଂ ଏହି ଅଞ୍ଚଳର ଅନେକ ମନ୍ଦିର ସେମାନଙ୍କ ଦ୍ୱାରା ନିର୍ମିତ ଏବଂ ନାମିତ ହୋଇଛି ।

ବିଶ୍ୱାସ କରାଯାଏ ଯେ ଭଗବାନ ଶିବ ମହେନ୍ଦ୍ରଗିରିଠାରେ ଧ୍ୟାନମଗ୍ନ ହୋଇଥିଲେ । ଭଗବାନ ପର୍ଶୁରାମ ଜୀବନର ଅଧିକାଂଶ ଅଂଶ ଏହି ଅଞ୍ଚଳରେ ବସବାସ କରିଥିଲେ ଏବଂ ତାଙ୍କଠାରୁ ଶିକ୍ଷା ଗ୍ରହଣ କରିବା ପାଇଁ ଭୀମ ଓ କର୍ଣ୍ଣ



ଆଦି ବୀରମାନେ ଏହି ଅଞ୍ଚଳକୁ ବାରମ୍ବାର ଆସୁଥିଲେ ବୋଲି ବିଶ୍ୱାସ କରାଯାଏ । ଆହୁରି ମଧ୍ୟ ବିଶ୍ୱାସ ରହିଛି ଯେ ମହାଭାରତ ଯୁଦ୍ଧ ପୂର୍ବରୁ ମହାମୁନୀ ଲୋମୋସାଙ୍କ ପରାମର୍ଶରେ ପାଣ୍ଡବମାନେ ଏହି ଅଞ୍ଚଳକୁ ଆସି ଏକ ପବିତ୍ର ମଣ୍ଡପ ବା ବେଦିକାକୁ ପ୍ରଣାମ କରି ଆଶୀର୍ବାଦ ଭିକ୍ଷା କରିଥିଲେ । ଏହି ଅବସରରେ ଏକ ବିଶାଳ ଯଜ୍ଞର ଆୟୋଜନ କରାଯାଇଥିଲା । ଏହି ଯଜ୍ଞରେ ଅନେକ ସାଧୁସନ୍ଥଙ୍କ ସମେତ ଦେବତା ଓ ଶକ୍ତିମାନେ ଉପସ୍ଥିତ ଥିଲେ । ଯୁଧିଷ୍ଠିର ଏଠାରେ ପିତୃଶ୍ରାଦ୍ଧ କରିବା ସମେତ ପିଣ୍ଡଦାନ କରିଥିଲେ । ସେଥିପାଇଁ ମହେନ୍ଦ୍ରଗିରିକୁ ପାଦଗୟା ମଧ୍ୟ କୁହାଯାଏ ।

ତନ୍ତ୍ର ଶାସ୍ତ୍ର ଅନୁସାରେ ଶକ୍ତିଙ୍କର ଦକ୍ଷିଣ ହସ୍ତ ଏଠାରେ ପଡ଼ିଥିଲା । ସେଇଥିପାଇଁ ଏହି ଅଞ୍ଚଳ ତନ୍ତ୍ରସାଧନାର କେନ୍ଦ୍ରବିନ୍ଦୁ ହୋଇ ରହିଥିଲା । ଏହି ଅଞ୍ଚଳ ଅନ୍ତର୍ଭୁକ୍ତ ରେଣ୍ଟିକୋଟା ଆଉ ତର୍ଲାକୋଟା ଅଞ୍ଚଳ ସାଂପ୍ରତିକ ସମୟ ପର୍ଯ୍ୟନ୍ତ ମଧ୍ୟ ତନ୍ତ୍ରସାଧନାର ସ୍ଥଳ ହୋଇ ରହିଛି ।

ହିନ୍ଦୁଧର୍ମର ଅନେକ ପୁରାଣ ଯଥା ସ୍କନ୍ଦ, ବାୟୁ ଏବଂ ଅଗ୍ନି ପୁରାଣରେ ମଧ୍ୟ ମହେନ୍ଦ୍ରଗିରିର ଉଲ୍ଲେଖ ରହିଛି ।

ରାମାୟଣରେ ପ୍ରଭୁ ଶ୍ରୀରାମ ମାତା ସୀତାଙ୍କ ସନ୍ଧାନରେ ଏହି ଅଞ୍ଚଳକୁ ଆସିଥିବା କଥା ଉଲ୍ଲେଖ ରହିଛି । ହନୁମାନ ଏହି ପର୍ବତଶୃଙ୍ଗରୁ ଶ୍ରୀଲଙ୍କାକୁ ଲମ୍ଫ ପ୍ରଦାନ କରିଥିଲେ ବୋଲି କୁହାଯାଏ, କାରଣ ଏହି ସ୍ଥାନରୁ ଶ୍ରୀଲଙ୍କାର୍ ଦୂରତ୍ୱ ୧୨୦୦୦ ମାଇଲ, ଯାହା ପୁରାଣରେ ବର୍ଣ୍ଣିତ । ରତି ବେଳାଭୂମିରେ ହନୁମାନଙ୍କ ପାଦଚିହ୍ନ ଦେଖିବାକୁ ମିଳେ ।

ପଞ୍ଚଦଶ ଶତାବ୍ଦୀରେ ଚୈତନ୍ୟ ଶ୍ରୀକୂର୍ମମ୍ ମନ୍ଦିର ଏବଂ ଆର୍ଯାଭେଲ ମନ୍ଦିର ଦର୍ଶନରେ ଆସିଥିବା ସମୟରେ ଏହ ଅଞ୍ଚଳ ପରଦର୍ଶନରେ ଆସିଥିଲେ । ତାଙ୍କର ପ୍ରଚେଷ୍ଟାରେ ଏହ ଅଞ୍ଚଳରେ ଅନେକ ରାଧାକୃଷ୍ଣ ମଠ ଏବଂ ମନ୍ଦିର ସ୍ଥାପିତ ହୋଇଥିଲା । ସେହପର ଅନେକ ଗଙ୍ଗବଂଶୀୟ ରାଜାମାନଙ୍କ ଦ୍ୱାରା ଏହ ଅଞ୍ଚଳରେ ଅନେକ ଜଗନ୍ନାଥ ମନ୍ଦିର ସ୍ଥାପିତ ହୋଇଥିଲା ।

ମହାକବ କାଳଦାସ ନଜ ବଖ୍ୟାତ କାବ୍ୟ ରଘୁବଂଶମରେ ରାଜ ରଘୁଙ୍କର ରାଜ୍ୟଜୟ ବଷୟରେ ଉଲ୍ଲେଖ କରଛନ୍ତ । ସେହ ରାଜ୍ୟଜୟ କରୁଥିବା ସମୟରେ ସେ କଳଙ୍ଗ ଜୟ କର ମହେନ୍ଦ୍ରଗିର ମଧ ଜୟ କରଥିବା କଥା ଉଲ୍ଲେଖ କରଛନ୍ତ । ଏହ ମହାକାବ୍ୟରେ କବ କାଳଦାସ କଳଙ୍ଗର ସମ୍ରାଟଙ୍କୁ ମହେନ୍ଦ୍ରଗିରର ଅଧିପତ ଭାବରେ ଉଲ୍ଲେଖ କରଛନ୍ତ । ଏହାଦ୍ୱାରା ପ୍ରମାଣିତ ହେଉଛ ଯେ ଅତୀତରେ ଏହ ଅଞ୍ଚଳ କଳଙ୍ଗ ସାମ୍ରାଜ୍ୟର ରାଜନୈତକ କେନ୍ଦ୍ର ଥାଇପାରେ । କାଳଦାସ ନଜ କାବ୍ୟରେ ବର୍ଣ୍ଣନା କର କହଛନ୍ତ ଯେ କଳଙ୍ଗ ସମ୍ରାଟଙ୍କ ନଅର ହେମାଙ୍ଗଡ଼ ସମୁଦ୍ର ନକଟବର୍ତ୍ତୀ ଅଞ୍ଚଳରେ ଥିଲା । ଯାହା ମହେନ୍ଦ୍ରଗିରଠାରୁ ଅଳ୍ପଦୂରରେ ଥିଲା ।

## ଅତୀତର ବାଣିଜ୍ୟ ଓ ବ୍ୟବସାୟ



ଗ୍ରୀକ୍ ପଣ୍ଡିତ ଟୋଲେମି ବଶ୍ୱ ବାଣିଜ୍ୟର ବଭିନ୍ନ ରାସ୍ତା ବଷୟରେ ଉଲ୍ଲେଖ କରୁଥିବା ସମୟରେ ପୂର୍ବ ଭାରତର ସମୁଦ୍ରପଥର ବର୍ଣ୍ଣନା କରବାକୁ ଯାଇ ମହେନ୍ଦ୍ର ପର୍ବତ କଥା କହଛନ୍ତ । ସେ କହଛନ୍ତ ଯେ ମହେନ୍ଦ୍ର ପର୍ବତ ପାଦଦେଶରେ ୧୮ ଡିଗ୍ରୀ ଅକ୍ଷାଂଶ ଏବଂ ୫୪ ଡିଗ୍ରୀ ଦ୍ରାଘିମାରେ ଅବସ୍ଥିତ ଏକ ଛୋଟ ନଦୀ ବରୁଆଠାରେ ଜାହାଜମାନେ ଦକ୍ଷିଣରୁ ଆସି



ଦିଗ ପରିବର୍ତ୍ତନ କରି ବର୍ମା ଓ ରେଙ୍ଗୁନର ଇରାୱାଡ଼ୀ ନଦୀ ଆଡ଼କୁ ଯାଉଥିଲେ । ଅନ୍ୟଜଣେ ପରିବ୍ରାଜକ ଏଚ୍ ୟୁଲେ ମଧ୍ୟ କହିଥିଲେ ଯେ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଡଚ୍ ମାନଙ୍କର ଅନେକ ଜାହାଜ ଏହି ଜଳପଥ ଦେଇ ଗତିକରୁଥିଲା ।

ମହେନ୍ଦ୍ରଗିରିରୁ ଉଦ୍ଗମ ହୋଇ ମହେନ୍ଦ୍ର ତନୟା ନଦୀ ବରୁବା ଠାରେ ସମୁଦ୍ରରେ ଲୀନ ହୋଇଥାଏ ।

ସମ୍ଭବତଃ ଦ୍ୱିତୀୟ ଶତାବ୍ଦୀ ବେଳକୁ ମହେନ୍ଦ୍ର ତନୟା ନଦୀକୁ ବରୁଆ ନଦୀ ଭାବରେ ଲୋକମାନେ ଜାଣୁଥିବେ । ଏବଂ ଏହି ସହରର ନାମ ପରେ ପରେ ବରୁଆ ବୋଲି କରାଯାଇଥିବ । ଗ୍ରୀକ୍ ବୈଜ୍ଞାନିକ ଟୋଲେମୀଙ୍କ ଅନୁସାରେ ବରୁଆ ସହର ଭାରତର ପୂର୍ବତଟର ଏକ ବାଣିଜ୍ୟିକ ପ୍ରାଣକେନ୍ଦ୍ରଥିଲା ।



ସେହିପରି ଆଉ ଜଣେ ଭୌଗଳିକବିଦ୍ ପ୍ଲିନି ମଧ୍ୟ ମହେନ୍ଦ୍ର ପର୍ବତ ଏବଂ ପୂର୍ବତଟ ପର୍ବତମାଳା ବିଷୟରେ ଉଲ୍ଲେଖ କରିଛନ୍ତି । ତତ୍କାଳୀନ କଳିଙ୍ଗର ଅଧିବାସୀଙ୍କୁ ଅତ୍ୟନ୍ତ ଅଧ୍ୟବସାୟୀ ବୋଲି ଉଲ୍ଲେଖ କରି ସେ ଲେଖିଛନ୍ତି ଯେ କଳିଙ୍ଗ ସାମ୍ରାଜ୍ୟ ମଣ୍ଡେଇ, ମାଲି ଓ ମାଲୟସ୍ ପର୍ବତମାଳା ସଂଲଗ୍ନ ସମୁଦାୟ ପୂର୍ବତଟରେ ବ୍ୟାପ୍ତ ଥିଲା । ବିଖ୍ୟାତ ଐତିହାସିକ କନିଙ୍ଗ୍ହାମ୍ ମଧ୍ୟ ମହେନ୍ଦ୍ରଗିରିକୁ ମହେନ୍ଦ୍ରମାଳା ବା ମହେନ୍ଦ୍ର ପର୍ବତ ଭାବରେ ଉଲ୍ଲେଖ କରିଛନ୍ତି ।

ବର୍ଷର ଶେଷ ତିନମାସ ଏହି ଅଞ୍ଚଳରେ ସମୁଦ୍ରର ଜଳ ନିର୍ମଳ ରହୁଥିବା ହେତୁ ଏବଂ ଉତ୍ତରପୂର୍ବରୁ ବହୁଥିବା ପବନର ବେଗ କମ୍ ହେବାଯୋଗୁଁ ବଣିଜମାନେ ଏହି ପଥଦେଇ ଯାତ୍ରା କରିବାକୁ ନିରାପଦ ମଣୁଥିଲେ । ଏହିଠାରୁ ଜାହାଜ ମାନେ ଇଣ୍ଡୋନେସିଆ, ମାଲେସିଆ, ବର୍ମା ଓ ଚୀନକୁ ଯାତ୍ରା କରୁଥିବା କଥା ଜଣାଯାଏ । ଅତୀତରେ ନାବିକମାନେ ସମୁଦ୍ର ଜଳର ରଙ୍ଗ, ପବନର ବେଗ, ଆକାଶରେ ତାରା ମାନଙ୍କର ଅବସ୍ଥିତି, ସର୍ପଜାତୀୟ ସରୀସୃପଙ୍କ ଉପସ୍ଥିତି, ସାମୁଦ୍ରିକ ପକ୍ଷୀମାନଙ୍କ ଗତିକୁ ଦେଖି ଜାହାଜ ଚାଳନା କରୁଥିଲେ ।

ଗ୍ରୀଷ୍ମ ସମୟରେ ଯେତେବେଳେ ବାୟୁ ରେଙ୍ଗୁନରୁ ଭାରତ ଆଡ଼କୁ ବହୁଥିଲା ସେହି ସମୟରେ ଜାହାଜମାନେ ଏଠାରେ ପହଞ୍ଚୁଥିଲେ । ପ୍ରତ୍ୟେକ ଜାହାଜରେ ନାବିକଙ୍କ ସମେତ ଅନେକ ପୂଜାରୀ, ବ୍ୟାପାରୀ, ଗ୍ରେଷେୟା, ସୈନିକ, ଚଷା, କଳାକାର, ସ୍ଥାପତ୍ୟ ଇତ୍ୟାଦି ରହୁଥିଲା, ଯାହା ତତ୍କାଳୀନ କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟ ପରମ୍ପରାକୁ ଦର୍ଶାଏ । ପୂର୍ବକଳିଙ୍ଗର ବରୁଆ ଆଉ ଇଚ୍ଛାପୁରମ୍ ସମୁଦ୍ର ସଂଲଗ୍ନ ଦୁଇଟି ନଦୀର ସ୍ଥଳଥିଲା ଯାହା ସେହି ସମୟରେ ବନ୍ଦର ଭାବରେ କାମ କରୁଥିଲା । ସେହି ସମୟରେ ଦୁଇଟି ଜାହାଜ କମ୍ପାନୀ ଥିଲା, ୧. ସିନ୍ଧିଆ ଷ୍ଟିମ୍ ନେଭିଗେସନ୍ ଏବଂ ୨. ନ୍ୟାସନାଲ୍ ଷ୍ଟିମ୍ ନାଭିଗେସନ୍ । ସେତେବେଳେ ଦୁଇଟି ବିଶାଳ ଜାହାଜ ଥିଲା ଯାହା ଭିମିଲି, କଳିଙ୍ଗପଟଣମ୍, ବରୁଆ, ଇଚ୍ଛାପୁରମ୍, ଗୋପାଳପୁର ଦେଇ ରେଙ୍ଗୁନ୍ ଯାଉଥିଲା । ସେଇ ଦୁଇଟିର ନାଁ ଥିଲା ଜଳଦୁର୍ଗା ଓ ଚିଲିକା । ଏହି ପରମ୍ପରାକୁ ମନେ ପକାଇବାପାଇଁ ପ୍ରତିବର୍ଷ କାର୍ତ୍ତିକମାସରେ ଓଡ଼ିଶାର ପୂରପଲ୍ଲୀରେ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୋଇଥାଏ । ଅଗଣିତ ନରନାରୀ ବିଭିନ୍ନ ଜଳାଶୟ, ନଦୀ ଓ ସମୁଦ୍ର କୂଳରେ ଏକତ୍ରିତ ହୋଇ ହଜାର ହଜାର ବୋଇତ ଭସାଇଥାନ୍ତି । ଏବଂ ଏବେ ମଧ୍ୟ ପ୍ରତ୍ୟେକ କାର୍ତ୍ତିକ ମାସରେ

ଆକାଶ ଦୀପ ପ୍ରଜ୍ୱଳନ କରିବାର ପରମ୍ପରା ରହିଛି ।

## କୃଷିବାସ ଏବଂ ଅନ୍ୟାନ୍ୟ ବେଉସା

ଏହି ଅଞ୍ଚଳରେ ନଦୀ, ପୋଖରୀ ଓ ବନ୍ଧମାନଙ୍କର ସଂଖ୍ୟା ଅଧିକ ଥିବା ହେତୁ, ଏଠାରେ ବର୍ଷସାରା ଫସଲ ହୋଇଥାଏ । ଅନ୍ୟତ୍ର ବର୍ଷରେ ଥରେମାତ୍ର ଧାନ ଚାଷ ହେଉଥିବା ବେଳେ ଏଠାରେ ବର୍ଷରେ ଦୁଇଥର ଧାନଚାଷ ହୁଏ । ଏହା ସମେତ ତୈଳ ବୀଜ, ମଟର ଚଣା, ମୁଗ, ବିରି, ଶୋଲଚଣା, ମାଣ୍ଡିଆ, ଚିନାବାଦାମ ଏବଂ ମକା ଚାଷ ମଧ୍ୟ ହୁଏ ।

ନଡ଼ିଆ, ପଣସ, ଆମ୍ବ ସମେତ ଅନେକ ପ୍ରକାରର ଫଳମୂଳ ମଧ୍ୟ ଏହି ଅଞ୍ଚଳରେ ଉତ୍ପନ୍ନ ହୋଇ ଦେଶର ବିଭିନ୍ନ ଅଞ୍ଚଳକୁ ରପ୍ତାନୀ କରାଯାଏ ।

ନଦୀ ସଂଲଗ୍ନ ଅଞ୍ଚଳରେ ଥିବା ହେତୁ ଏଠାରେ ମାଛ ଏବଂ ସାମୁଦ୍ରିକ ଖାଦ୍ୟୋପଯୋଗୀ ଜୀବ ଅଧିକ ମିଳେ ।

ଜଙ୍ଗଲ ଅଞ୍ଚଳରେ ଶାଳ, ପିଆଶାଳ, ସବାଇ ଘାସ ଇତ୍ୟାଦି ଦେଖିବାକୁ ମିଳେ । ଏଠାରେ ଥିବା ଜଙ୍ଗଲରେ ବିଭିନ୍ନ ପ୍ରଜାତିର ଜୈବବିବିଧତା ଦେଖାଯାଏ । ଏହା ସମେତ ଏହି ସବୁ ଜଙ୍ଗଲରେ ଅନେକ ଔଷଧୀୟ ବୃକ୍ଷ ମଧ୍ୟ ଦେଖିବାକୁ ମିଳିଥାଏ । ଏହି ସବୁ ପଦାର୍ଥ ବ୍ୟବସାୟିକ ଦୃଷ୍ଟିରୁ ଏହି ଅଞ୍ଚଳକୁ ସମୃଦ୍ଧ କରିଥାଏ ।

ଏହି ଜଙ୍ଗଲମାନଙ୍କରେ ବିଭିନ୍ନ ପ୍ରଜାତିର ପଶୁପକ୍ଷୀ ଦେଖାଯାଆନ୍ତି । ହରିଣ, କୋକଶିଆଳୀ, ହାତୀ, ଚିତାବାଘ, ହେଟାବାଘ, ଠେକୁଆ, ମାଙ୍କଡ଼, ମୟୁର, ଭାଲୁଆ ଆଦି ଏଠାରେ ଦେଖିବାକୁ ମିଳନ୍ତି । ଏଠାରେ ଥିବା ଦଳୁଆ ଜମିମାନଙ୍କରେ ଅଗଣିତ ପକ୍ଷୀ ଏବଂ ଶୀତକାଳୀନ ବିଦେଶୀ ପକ୍ଷୀ ମଧ୍ୟ ଦେଖିବାକୁ ମିଳିଥାଏ । ଗେଣ୍ଡାଳିଆ, ସାଇବେରୀୟ କ୍ରେନ୍, ବଡ଼ ପକ୍ଷୀ, ବତକ ଆଦି ଅନେକ ପ୍ରଜାତିର

ପକ୍ଷୀ ଏଠାରେ ଦେଖିବାକୁ ମିଳିଥାଏ । ଏଠାରେ ସମୁଦାୟ ୬୯ ପ୍ରଜାତିର ପଶୁ, ୨୦ ପ୍ରଜାତିର ଉଭୟଚର, ୩ ପ୍ରଜାତିର କଇଁଛ, ୨୨ ପ୍ରଜାତିର ସରୀସୃପ ଏବଂ ୨୪ ପ୍ରଜାତିର ସାପ ଦେଖିବାକୁ ମିଳିଥାଏ ।

### କ୍ଷୁଦ୍ର ଓ ମଧ୍ୟମ ବ୍ୟବସାୟିକ ସଂଗଠନ

ଏହି ଅଞ୍ଚଳରେ ନଡ଼ିଆ ଗଛର ସଂଖ୍ୟା ବହୁତ ଅଧିକ, ତେଣୁ ଏହାକୁ ନେଇ ଅନେକ ଘରୋଇ ଉଦ୍ୟୋଗ ସୃଷ୍ଟି ହୋଇଛି । ନଡ଼ିଆ ତୋଳିବା, ନଡ଼ିଆ କତାରୁ ଦଉଡ଼ି ତିଆରି କରିବା, ପଟି ଓ ମସିଣା ତିଆରି କରିବା, ଝାଡ଼ୁ ଆଦି ତିଆରି କରିବା ଏବଂ ନଡ଼ିଆ ତେଲ ବାହାର କରିବା ଆଦି ଶିଳ୍ପ ଏହି ଅଞ୍ଚଳରେ ଦେଖାଯାଏ । ବାଉଁଶ ନିର୍ମିତ ସାମଗ୍ରୀ ମଧ୍ୟ ଏହି ଅଞ୍ଚଳରେ ବହୁଳ ଭାବରେ ମିଳେ । ହସ୍ତତନ୍ତ ଶିଳ୍ପ, କୁମ୍ଭାର ଶିଳ୍ପ, ଧାନକଳ ଆଦିରେ ଏହି ଅଞ୍ଚଳ ସମୃଦ୍ଧ ।

### ବରୁଆର ଜନାର୍ଦ୍ଦନ ସ୍ୱାମୀ ମନ୍ଦିର

ପ୍ରାୟ ସାତଶହ ବର୍ଷ ତଳେ ନିର୍ମିତ ଏହି ମନ୍ଦିର ରେଖାକୃତ ଆକାରରେ ନିର୍ମାଣ ହୋଇଛି । ପ୍ରାଚୀନ କଳିଙ୍ଗ ସ୍ଥାପତ୍ୟ କଳାରେ ସମୃଦ୍ଧ ଏହି ମନ୍ଦିରର ସୌନ୍ଦର୍ଯ୍ୟ ।

ଲୋକକଥାରେ ଶୁଣାଯାଏ ଯେ ସମୁଦ୍ରକୁ ମାଛ ଧରିବାପାଇଁ ଯାଇଥିବା କେଉଟ ମାନଙ୍କୁ ଜନାର୍ଦ୍ଦନସ୍ୱାମୀଙ୍କ ଏକ ପ୍ରତିମା ମିଳିଥିଲା । ସେମାନେ ଏହାକୁ ସମୁଦ୍ର କୂଳକୁ ଆଣିବାପରେ ଏହା ଅଚଳ ହୋଇଯାଇଥିଲା । ପରେ ଜଣେ ସାଧୁ ଶ୍ରୀ ଗୁପ୍ତମୁନୀଙ୍କୁ ସ୍ୱପ୍ନାଦେଶ ହେବାପରେ ସେ ସେଠାରେ ପହଞ୍ଚି ଜନାର୍ଦ୍ଦନସ୍ୱାମୀଙ୍କ ଉଦ୍ଦେଶ୍ୟରେ ଏକ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିର ନିର୍ମାଣ ହେବାପରେ ପ୍ରତିମାରେ ଲାଗିଥିବା ମୁକୁଟ ମଧ୍ୟ ସମୁଦ୍ରରୁ ବହି ଆସି କୂଳରେ ଲାଗିଥିଲା । ଶ୍ରୀ ଗୁପ୍ତମୁନୀ ସ୍ୱାମୀଙ୍କ ତତ୍ତ୍ୱାବଧାନରେ ଏହି ମନ୍ଦିର ପ୍ରତିଷ୍ଠା ହୋଇଥିଲା ।

ପ୍ରତିବର୍ଷ ମାଘମାସ ସପ୍ତମୀ ଦିନ ସୂର୍ଯ୍ୟଙ୍କ କିରଣ ସିଧା ଆସି ଜନାର୍ଦ୍ଦନସ୍ୱାମୀଙ୍କ ପାଦରେ ପଡ଼ିଥାଏ । ଏବଂ ମନ୍ଦିରକୁ ଆସୁଥିବା ଭକ୍ତଙ୍କୁ ସବୁବେଳେ ପ୍ରତିମା ନିଜ ଉଚ୍ଚତା ସମାନ ଦେଖାଯାଏ । ଅର୍ଥାତ ଗର୍ଭଗୃହ ବାହାରେ ଥିବା ଭକ୍ତଙ୍କ ଉଚ୍ଚତା ଯେତେ ଥାଏ ଭିତରେ ପ୍ରତିମାର ଉଚ୍ଚତା ମଧ୍ୟ ସମାନ ସେତିକି ଦେଖାଯାଏ । ସ୍ଥାନୀୟ କେଉଟ ଏବଂ ଅନ୍ୟାନ୍ୟ ଜାତିର ଲୋକମାନେ ଏହି ମନ୍ଦିରକୁ ଅତ୍ୟନ୍ତ ପବିତ୍ର ବୋଲି ମନେ କରନ୍ତି ଏବଂ ଭଗବାନ ତାଙ୍କୁ ସମସ୍ତ ବିପଦରୁ ରକ୍ଷା କରିବେ ବୋଲି ବିଶ୍ୱାସ କରନ୍ତି । କିନ୍ତୁ ବର୍ତ୍ତମାନ ଏହି ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ରହିଛି ।

## ବରୁଆର କୋଟିଲିଙ୍ଗେଶ୍ୱର ମନ୍ଦିର

ମହାପ୍ରଭୁ ଶିବଙ୍କୁ ସମର୍ପିତ ଏକ ବିରଳ ମନ୍ଦିର ବରୁଆଠାରେ ଦେଖିବାକୁ ମିଳେ । ମନ୍ଦିରର ଗର୍ଭଗୃହରେ ଶିବଙ୍କ ଛବି ଦେଖିବାକୁ ମିଳେ । ଏବଂ ଏଠାରେ ଅଗଣିତ କ୍ଷୁଦ୍ର ଶିବଲିଙ୍ଗ ଦେଖାଯାଏ । ଯାହା କୋଟି ଲିଙ୍ଗେଶ୍ୱର ଭାବରେ ପୂଜାପାଆନ୍ତି । ଏଠାରେ ଗଣେଶଙ୍କ ଏକ ପ୍ରସ୍ତର ମୁର୍ତ୍ତି ରହିଛି । ଏହା ଚତୁର୍ପାର୍ଶ୍ୱରେ ନବଗ୍ରହ ମଣ୍ଡପ ଅଛି । ଏବଂ ତାମ୍ର ନିର୍ମିତ ଏକ ନନ୍ଦୀ ଶୋଭାପାଉଛନ୍ତି । ମନ୍ଦିରର ଜଗନମୋହନ ସମ୍ମୁଖରେ ପୀଢ଼ ରହିଛି । ଏହି ମନ୍ଦିରର କାରୁକାର୍ଯ୍ୟ ସମ୍ପୂର୍ଣ୍ଣ କଳିଙ୍ଗ ସ୍ଥାପତ୍ୟରେ ହୋଇଛି ।

ପୌରାଣିକ କଥା ଅନୁଯାୟୀ, ଦ୍ୱାପର ଯୁଗରେ ଅର୍ଜୁନ ପିତୃଶ୍ରାଦ୍ଧ କରିବାପାଇଁ ଗଣ୍ଡା ଶିକାର କରିବା ସମୟରେ ଭୁଲରେ ଗୋଟିଏ ଗାଇକୁ ମାରିଦେଇଥିଲେ । ସେ ଏହାକୁ ଗୋଟିଏ ଗୁମ୍ଫାରେ ଲୁଚେଇ ରଖିବା ପରେ ସମୁଦ୍ରକୁ ଫୋପାଡ଼ି ଦେଇଥିଲେ । ହେଲେ ଯେଉଁସ୍ଥାନରେ ଏ ସବୁ ହେଲା ସେଠାରେ ପଡ଼ିଥିବା ଗାଇର ରକ୍ତରୁ ଅଗଣିତ ଶିବଲିଙ୍ଗ ଦେଖାଦେଇଥିଲେ । ଅର୍ଜୁନଙ୍କ ଏହି ଭୁଲର ପ୍ରାୟଶ୍ଚିତ

କରିବାପାଇଁ ପାଣ୍ଡବମାନେ ଏକ ବିଶାଳ ଯଜ୍ଞର ଆୟୋଜନ କରିଥିଲେ ଯେଉଁଠି ସ୍ୱୟଂ ଶିବ ଉପସ୍ଥିତ ଥିଲେ । ପରେ ପାଣ୍ଡବମାନେ ଏହି ଶିବଲିଙ୍ଗ ଚାରିପାଖରେ ମନ୍ଦିର ନିର୍ମାଣ କରିଥିଲେ ।

## ପୀର୍ଲାକୋଣ୍ଡା ପର୍ବତ : ରାଷ୍ଟ୍ରୀୟ ସଂହତିର ପ୍ରତୀକ

ଇଛାପୁରମ୍ ଜିଲ୍ଲାର ଏକ କ୍ଷୁଦ୍ର ପାହାଡ଼ ରହିଛି ଯାହା ପୀର୍ଲାକୋଣ୍ଡା ଭାବରେ ବିଖ୍ୟାତ । ଷୋଡ଼ଶ ଶତାବ୍ଦୀର ଜଣେ ମୁସଲମାନ୍ ସନ୍ୟାସୀ ବା ପୀରଙ୍କ ନାମରେ ଏହା ନାମିତ । ସମଗ୍ର ଦେଶରେ ଅନେକତାରେ ଏକତାର ମୂଳମନ୍ତ୍ର, ଏହିଠାରେ ଦେଖିବାକୁ ମିଳେ । ବିଭିନ୍ନ ଜାତି, ଧର୍ମ ଓ ଭାଷାଭାଷୀ ଲୋକମାନେ ଏହିସ୍ଥାନରେ ସୁଖଶାନ୍ତିରେ ସହାବସ୍ଥାନ କରନ୍ତି । ଏହି କ୍ଷୁଦ୍ର ପର୍ବତ ଉପରେ ଗୋଟିଏ ଦରଘା ଓ ଗୋଟିଏ ପୁଷ୍କରିଣୀ ରହିଛି । ପୀରବାବାଙ୍କ ସମର୍ଥକମାନଙ୍କ ଦ୍ୱାରା ଏହା ଷୋଡ଼ଶ ଶତାବ୍ଦୀରେ ନିର୍ମିତ ହୋଇଥିବା ଜଣାଯାଏ ।

ପ୍ରତି ସପ୍ତାହର ଗୁରୁବାର ଦିନ ଏହି ଅଞ୍ଚଳ ସଂଲଗ୍ନ (ଓଡ଼ିଶା, ଉତ୍ତର ଆନ୍ଧ୍ରପ୍ରଦେଶ, ଛତିଶଗଡ଼ ଓ ପଶ୍ଚିମବଙ୍ଗ) ଅନେକ ଅଞ୍ଚଳରୁ ଲୋକମାନେ ଦରଘାରେ ବାବାଙ୍କ ପୂଜାଆରାଧନା ପାଇଁ ଏକତ୍ରିତ ହୋଇଥାନ୍ତି । ଏଠାରେ ମାନ୍ୟ ଅଛି ଯେ ଯଦି କୌଣସି ବ୍ୟକ୍ତି ହୃଦୟର ସହ ଏହି ଦରଘା ଚାରିପାଖରେ ବୁଲି ଆସେ ତାହାର ସବୁ ମନୋସ୍କାମନା ପୂରଣ ହୋଇଥାଏ । ଏଠାକୁ ଆସୁଥିବା ଲୋକମାନେ ଦରଘା କାନ୍ଥରେ ନିଜ ଇଚ୍ଛାକୁ ଲେଖିଦିଅନ୍ତି ଏବଂ ପରେ ବାବାଙ୍କ ପୂଜା କରନ୍ତି । ମାର୍ଗଶୀର ମାସର ସମସ୍ତ ଗୁରୁବାରରେ ଏଠାରେ ପେରୁଯାତ୍ରା ପାଳିତ ହୁଏ । ହିନ୍ଦୁ ମୁସଲମାନ ସମସ୍ତେ ଏକତ୍ରିତ ହୋଇ ଏଠାରେ ପୂଜା କରନ୍ତି ।

ଲୋକକଥା ଅନୁଯାୟୀ ଷୋଡ଼ଶ ଶତାବ୍ଦୀରେ ପୀରବାବା ଇଛାପୁରକୁ ଆସିଥିଲେ ଏବଂ ଏହି ପର୍ବତ ଶୀର୍ଷରେ କୁଡ଼ିଆଟିଏ ତିଆରି କରି ରହିଥିଲେ ।

ଧିରେ ଧିରେ ଲୋକମାନେ ନିଜ ନିଜ ଅସୁବିଧା ନେଇ ବାବାଙ୍କୁ ଦର୍ଶନ କରିବାକୁ ଆସିଲେ । ଲୋକଙ୍କ ଦୁଃଖ ଶୁଣି ବାବା ବିଭିନ୍ନ ପ୍ରକାର ନିବାରଣ ବ୍ୟବସ୍ଥା କହିବା ସହିତ ତେଲ ଆଦି ଦେଉଥିଲେ । ପରେ ସେ ଏହି ଅଞ୍ଚଳରେ ପ୍ରସିଦ୍ଧ ହୋଇଥିଲେ । ତାଙ୍କର ଏହି ସ୍ଥଳରେ ଦରଘା ନିର୍ମାଣ କରାଯାଇଥିଲା । ଜୀବନରେ ଶେଷ ସମୟ ସେ ବର୍ତ୍ତମାନର ପାକିସ୍ତାନ ଅନ୍ତର୍ଗତ ପଠାଣକୋଟ୍ ଠାରେ ବିତେଇଥିଲେ ।

## ତେଲୁକୁଞ୍ଚି ପକ୍ଷୀ ଅଭୟାରଣ୍ୟ

ଉତ୍ତର ଆନ୍ଧ୍ରପ୍ରଦେଶର ଇଚ୍ଛାପୁରମ୍ ଠାରୁ ମାତ୍ର ତିନି କିଲୋମିଟର୍ ଦୂରରେ ଅବସ୍ଥିତ ତେଲୁକୁଞ୍ଚି ଏକ ସାମାନ୍ୟ ଗ୍ରାମ ମାତ୍ର । ଏହି ଗ୍ରାମର ବିଶେଷତ୍ୱ ହେଉଛି, ଏଠାରେ ଥିବା ପ୍ରତ୍ୟେକ ଗଛ ଉପରେ ଅଗଣିତ ଗେଣ୍ଡାଳିଆ ପକ୍ଷୀ ବସା କରିଥାନ୍ତି । ଶୀତଦିନ ଆରମ୍ଭ ସମୟରେ ଏହି ଅଞ୍ଚଳରେ ଦେଖାଯାଉଥିବା ଏହି ପକ୍ଷୀମାନଙ୍କୁ ଦେଖିବା ଅତ୍ୟନ୍ତ ଆମୋଦକର ହୋଇଥାଏ । ପକ୍ଷୀମାନେ ମଧ୍ୟ ସ୍ଥାନୀୟ ଅଧିବାସୀଙ୍କ ସହ ଖାପଖୁଆଇ ରହନ୍ତି ।

ପ୍ରତିବର୍ଷ ଜୁନ ମାସ ବେଳକୁ ହଜାର ହଜାର ସଂଖ୍ୟାରେ ଗେଣ୍ଡାଳିଆ ମାନେ ଏହି ଗାଁରେ ଆସି ବସା ବାନ୍ଧନ୍ତି । ଗାଁ ସଂଲଗ୍ନ ସମସ୍ତ ଗଛରେ ସେମାନେ ବସା ବାନ୍ଧି ଅଣ୍ଡା ଦିଅନ୍ତି । ଗାଁ ଲୋକମାନେ ପକ୍ଷୀମାନଙ୍କ ଆଗମନକୁ ଶୁଭ ବୋଲି ମାନନ୍ତି । ଏହାଦ୍ୱାରା ଭଲ ବୃଷ୍ଟିପାତ, ବର୍ଷା ଆଦି ହୁଏ ବୋଲି ବିଶ୍ୱାସ ରହିଛି । ସେଥିପାଇଁ ଏହି ଗ୍ରାମବାସୀମାନେ ପକ୍ଷୀମାନଙ୍କ ସୁରକ୍ଷା ଦାୟିତ୍ୱ ନିଜେ ନେଇଥାନ୍ତି । ପକ୍ଷୀମାନେ ଗେଣ୍ଡା, କୁଚିଆ, ଛୋଟ ଛୋଟ ମାଛ ଆଦି ଖାଇଥାନ୍ତି ।

୨୭ରୁ ୩୦ ଦିନ ଅଣ୍ଡା ଦେବାପରେ ଅଣ୍ଡାରୁ ଛୋଟ ଛୋଟ ପକ୍ଷୀ ବାହାରିଥାନ୍ତି । ଶାବକ ମାନଙ୍କୁ ଖାଦ୍ୟ ଦେବା ଦାୟିତ୍ୱ ଉଭୟ ମାଆ ଆଉ ପୁରୁଷ ପକ୍ଷୀ ନିଅନ୍ତି । ଜନ୍ମ ହେବା ବେଳେ ଏହି ପକ୍ଷୀମାନଙ୍କ ଥଣ୍ଟରେ କୋଣସି ଫାଙ୍କ




ନଥାଏ, କିନ୍ତୁ ଧିରେ ଧିରେ ସେମାନେ ବଡ଼ ହେଉ ହେଉ ଦୁଇ ଥଣ୍ଟ ଭିତରେ ଫାଙ୍କ ସୃଷ୍ଟି ହୋଇଥାଏ । ସମ୍ପୂର୍ଣ୍ଣ ଭାବେ ବଢ଼ିଥିବା ଗୋଟିଏ ପକ୍ଷୀ ୮୧ ସେଣ୍ଟିମିଟର୍ ପର୍ଯ୍ୟନ୍ତ ଉଚ୍ଚ ହୋଇଥାଏ ଏବଂ ଏକ କିଲୋରୁ ଅଧିକ ଓଜନିଆ ହୋଇଥାଏ ।







ମୂଳ ଆଲେଖ୍ୟ : ଶ୍ରୀ ଲିଙ୍ଗରାଜ ପ୍ରସାଦ ଅମୂଲ୍ୟ ପଟ୍ଟନାୟକ

ଭାଷାନ୍ତରଣ : ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

# ଆମ ଗାଁ ହାଲଗ୍ଲ



ଡା ଜ୍ୟୋତ ପ୍ରସାଦ ପଟ୍ଟନାୟକ

ଦନ ଦ ପହର ହେଲ୍ଣି । ଗାଁ ଦାଣ୍ଡରେ ବଳଦଟେ କ ଗାଇଟେ ଦେଖାଯାଉନ । ପୋଖରୀ ତୁଠରେ ଗଗ୍ରେ ପାଣିଧର ଆସୁଥିଲ୍ ବାସନ୍ତୀ, କାଳଆ ଓଡ଼ିଆ ଘର ଦୁଆର ପାଖରେ ଘଡ଼ିଏ ଠିଆ ହୋଇଗଲ୍ । ଗର୍ଭଣା ସ୍ତ୍ରୀଟା କେତେ କଷ୍ଟ ଆଉ କରବ ? ଆଠମାସ ହେଲ୍ଣି । ଆଶାଦଦ ମନା କରଥିଲ୍ କାମଧାମ କରବାକୁ ହେଲେ ନ କଲେ ନ ଚଳେ । ଘରେ ଆଉ କେହ ନାହାନ୍ତ । ଭୁଆସୁଣୀ ନଣନ୍ଦ କୁମାରୀଟା ବ ଯାଇଛ ସହରକୁ କୁନାବାପା ସାଙ୍ଗରେ । ଦ ସପ୍ତାହ ହେଲ୍ଣି, ନତଦନ ସକାଳୁ ଯାଉଛନ୍ତ ଯେ ଫେରୁ ଫେରୁ ଗ୍ତ । ଘରର ସବୁ କାମ ବାସନ୍ତୀ ଉପରେ । ହେଲେ ସେ ମନ ଉଣା କରୁନ । ଆଜକାଲ ଘରକୁ ଫେରଲ୍ ବେଳକୁ ଦଜଣ ଗ୍ହରଶ' ଧର ଫେରୁଛନ୍ତ । ଭଲ କାମ ମିଳଛ । ଆଗରୁ କୁନାବାପା ଏକା ଯାଉଥିଲ୍ ଦନକୁ ଶହେ କ ଦେଢ଼ଶ' ଆଣୁଥିଲ୍ । ଆଜକାଲ ବେଉସା ଭଲ ଗ୍ଲଛ । ଗଲ୍ ବୁଧବାର ଦନ କୁନାବାପା ଆଉ କୁମାରୀ ଗ୍ତରେ ଆସିଲ୍ ବେଳକୁ ସହର ହୋଟେଲରୁ କୁକୁଡ଼ା ମାଂସ ତରକାରୀ ଆଣିଥିଲେ । ବାସନ୍ତୀ ତା ଜୀବନରେ କେବେ ହୋଟେଲରେ ମାଂସ ଖାଇନଥିଲ୍ । ଗର୍ଭଣା ସ୍ତ୍ରୀଟା, ସୁଆଦ ଖୋଜୁଥିବ ଭ୍ବ କୁନାବାପା ତା ପାଇଁ ଅଲଗାରେ ଆଣି ଦେଇଥିଲ୍ । ତୁଣ୍ଡରେ ଦେଉ ଦେଉ ବାସନ୍ତୀ କାନ୍ଦି ପକେଇଥିଲ୍ । ତା ବାପାବୋଉ ବାହା ବେଳେ କହଥିଲେ, ଦେଖିବୁ ଥା, ଦନ ଆସିବ, କାଳଆ ତତେ

କେତେ କଣ ଆଣି ଦେବ । ଗରୀବ ବୋଲି ଏତେ ଦିନ ଯାହା ମନ ଦୁଃଖ କରୁଥିଲା, ତରକାରୀ ପାଟିରେ ଲାଗିଲା ବେଳକୁ ବୋଉ କଥା ମନେ ପଡ଼ିଗଲା ଯେ ବାସନ୍ତୀର କାନ ଓଦା ହୋଇଗଲା ।

ସେ ଦିନ ରାତିରେ ଅଗଣାଟାରେ କୁନାବାପା ପାଖରେ ବସି ତା ଗୋଡ଼କୁ ଘଷି ମୋଡ଼ି ଦେଉଥିଲା ସେ, କେତେ ପରିଶ୍ରମ କରୁଛନ୍ତି । ସକାଳୁ ଗଲେ ରାତି । କୁମାରୀଟା ବି ପିଲାଟା ନା । ଟଙ୍କାପତ୍ର ନାହିଁ ବୋଲି ଘରେ ବସିଛି । ନହେଲେ କେବେଠୁ ତା ବାହାଘରଟା ତୁଟେଇ ଦେଏନ୍ତେଣି । କୁନାବାପା ଶୋଇଲା ବେଳକୁ ବଡ଼ିଖଣ୍ଡେ ଟାଣେ । ବଡ଼ିଟେ ଆଣିବାପାଇଁ ବାସନ୍ତୀ ଯାଇ କୁନାବାପାର ସାର୍ଟ ପକେଟରେ ହାତ ମାରିବା ବେଳକୁ ଦେଖିଲା ମୁଠାଟେ ହେବ ଧୋବଧାଉଳିଆ ଟଙ୍କା ନୋଟ୍ । ଏ ମା, କୋଉଠୁ ଏତେ ଟଙ୍କା ପାଇଲେ ? ବାସନ୍ତୀ ମନକୁ ପାପ ଛୁଉଁଥିଲା । ବଡ଼ିଟା କୁନାବାପାକୁ ଦେଉ ଦେଉ ଟଙ୍କା କଥା ପଚାରି ବସିଲା । କୁନାବାପା ତାକୁ ଇଙ୍ଗିତକରି ନିରବ ରହିବାକୁ କହିଲା, 'ଜାଣିନୁ, କାନ୍ଥବାଡ଼ର ବି କାନ ଥାଏ ।'

ବାସନ୍ତୀ ଆଁ କରି ଚାହିଁଥାଏ । କୁନାବାପା ବୁଝେଇଦେଲା, ଏଇ ଟଙ୍କା ତା'କୁ ତା ସାହୁକାର ଦେଇଛି । ନିତି ଏତେ ଏତେ ଟଙ୍କା ଦେଉଛି, ସିଏ ଆଉ କୁମାରୀ ଯାଇ ବ୍ୟାଙ୍କରେ ଧାଡ଼ିରେ ଠିଆ ହେଇ ସେଇ ଟଙ୍କା ଦେଇ ନୂଆ ଟଙ୍କା ନେଇ ଆସୁଛନ୍ତି । ଆଉ ସେତକ କରିବାପାଇଁ ଦିନକୁ ଦ'ଶ ଦେଉଛି । ବାସନ୍ତୀ ଆଖି ତରାଟି କରି ଚାହିଁ କହିଲା, ଆଉ ଗାଁ କରଣ ଆଜ୍ଞା ଯାହା କହିଥିଲେ, ଭୁଲିଗଲ ? ମନା କରିଥିଲେ ଟି, କାହା ପାଇଁ ଟଙ୍କା ବଦଳାଇବାକୁ ଯିବନି ବୋଲି ? ଟିଭିରେ କେତେ କହୁଛି, ବଙ୍ଗାଳୀଘର ମା' କହୁଥିଲା, ଯଦି କିଏ ଏମିତି କରିବ ତାକୁ ବାନ୍ଧି ପକେଇବେ । ବାମୁଣ ଘର ପୁଅ କହୁଥିଲା, ଏ ସବୁ ଭଲ କଥାନାହିଁ ।

କୁନାବାପା କହିଲା, "ଓହୋ, ସତେ ଯେମିତି କାର୍ଜି କରଣ ଆମକୁ ଖାଇବାକୁ

ଦେବେ ! କଲେ, ଆମେ କାମ କରିଲେ ଆମ ଘର ଚାଲିବ । କାର୍ଜି କରଣଙ୍କୁ ଅଭାବ ଅଛି କି ? ତାଙ୍କୁ ସରକାର ଦରମା ଦଉଚି ଆମକୁ କିଏ ଦେବ ? ଆଉ ଶୁଣ, ତୁ ଦିନେ ଚାଲି ଦେଖିବୁ କେତେ ଭିଡ଼ ସେଇଠି । ଏକା ମୁଁ ନାହିଁ, ପୁରା ସହର ଧାଡ଼ିରେ ଲାଗିଛି । ବୁଝିଲୁ । ପୁରା ମେଳା ଭଳିଆ । ଯୋଉଠି ଦେଖିବୁ ଶିବରାତ୍ରୀରେ ମନ୍ଦିର ଆଗରେ ଭିଡ଼ ଭଳି ଧାଡ଼ି । ସମସ୍ତେ ପୁରୁଣା ଟଙ୍କା ଦେଇ ନୁଆ ନେବାକୁ ଲାଗିଛନ୍ତି । ବୁଧୁବାର ଦିନ ମୁଁ ଦି ଥର ଟଙ୍କା ବଦଳେଇଥିଲି ବୋଲି ସାହୁକାର ଶହେ ଟଙ୍କା ଅଧିକ ଦେଇଥିଲା । ସେଇଥିପାଇଁ ତୋ ପାଇଁ ମାଂସ ତରକାରୀ ଆଣିଥିଲି । ବୁଝିଲୁ, ତୁ ଖାଲି ପ୍ରାର୍ଥନା କରେ, ଯେମିତି ଦିନକୁ ଦୁଇ ତିନିଥର ମୁଁ ଟଙ୍କା ବଦଳେଇବ । ତୋ ପାଇଁ ନିତ ମାଂଉସ ତରକାରୀ ଆଣିଦେବ ।”

ବାସନ୍ତୀ କିଛି କହିପାରିଲାନି । ହେଲେ ସୁଧା ମନକୁ ପାପ ଛୁଉଁଥିଲା । ଗୁଣୁଗୁଣୁ ହେଉଥିଲା, କୁନାବାପା କିନ୍ତୁ ନିଘୋଡ଼ ନିଦରେ ଶୋଇଗଲା । ବାସନ୍ତୀକୁ ରାତିସାରା ନିଦ ନାହିଁ । ପାହାନ୍ତି ପହରକୁ ଆଖି ବନ୍ଦିଥିଲା କୁନାବାପା ଆଉ କୁମାରୀ ସହର ଯିବାକୁ ବାହାରିଲେ । ବାସନ୍ତୀ ଘରେ ବସି ରହିଲା । କୁନାଟା ନିଦରୁ ଉଠିଲା ପରେ ଅଙ୍ଗନାବାଡ଼ି ଦିଦି ଘରକୁ ପଠେଇଦେଲା । ମୁଣ୍ଡଟା ଭାରି ଭାରି ଲାଗୁଥିଲା । ମନ କିଛି ଭଲ ଲାଗୁନଥିଲା । କାହାକୁ କହିବ ? କହିଲେ ଗାଁରେ ବାସନ୍ଦ କରିଦେବେ । ଗାଁ କାର୍ଜିଏ ଭାରୀ ରାଗିଲୋକ । ତଥାପି ମନକୁ ବୁଝେଇ କାର୍ଜିଘର ବାଡ଼ି କୁଅ ପାଖରେ ଯାଇ ବସିଲା । ଅଧାଗାଁର ସ୍ତ୍ରୀଲୋକ ସେଇଠି । ସବୁ ପାଣିପାଇଁ ଆସୁଛନ୍ତି ଯାଉଛନ୍ତି । ବାସନ୍ତୀକୁ ଦେଖି କାର୍ଜିଘର ମା ପଚାରିଲେ, “କଲୋ ବସିଲୁ ଯେ ? ପାଣି ଧରିବୁନି କି ? ହାଲିଆ ଲାଗୁଛି ? ଆ, ଏ ପାଖକୁ ଆ । ଏଇ ଛାଇରେ ବସ ।”

ବାସନ୍ତୀ ଉଠି ତାଙ୍କ ବାଡ଼ିପଟ ଦୁଆର ପାଖକୁ ଲାଗି ଥିବା ଗୁହାଳ ଛାଇରେ ବସିଲା । ଧିରେ ଧିରେ ଗହଳି କମ୍ ହଉଥିଲା । କାର୍ଜିଘର ମା ମଧ କାମଧାମ

ସାରଦେଇ ଆସି ସେଇଠି ବସିଲା ପରେ ଏମିତ ନଜାଣିଲା ପରି ପଗ୍ଗରିଲା, "ମା, ଏଇ ଆଜ୍ଞା ଯୋଉ କହୁଥିଲେ ଟଙ୍କା ବଦଳେଇବା କଥା । ସେଇଟା କଣ ସତ ? ଯଦ ଟଙ୍କା ବଦଳେଇବ, ବୋଇଲେ ପୋଲିସ ବାନ୍ଧି ପକେଇବ କ ?"

କାର୍ଜି ମା କହିଲେ, "କେଜାଣିଲେ ମା ! ଆଜ୍ଞା କହୁଥିଲେ, ସହରରେ କାଲେ ବାଡ଼ିଆବାଡ଼ି ଗ୍ଗଲଛି । ସରକାର ଯଦ କଛି କରୁଛନ୍ତି, ସମସ୍ତଙ୍କ ଭଲ ପାଇଁ କରୁଥିବେ ନା । ହେଲେ ଲୋକ କଣ ବୁଝୁଛନ୍ତି ? କହିଲୁ ଦେଖି, ଘର ଚଳେଇବାକୁ ଯଦ ସମସ୍ତେ ସମାନେ ସାହାଯ୍ୟ କରିବାନି ଘର ଗ୍ଗଲିବକି ? କଛି ଲୋକ ଟଙ୍କାକୁ ଲୁଚେଇ ରଖିଛନ୍ତି । ଲୋକଙ୍କୁ ଠକି ନେଇ ସବୁ ଟଙ୍କା ଚପି ରଖୁଛନ୍ତି, ସେଇଥିପାଇଁ ଦେଶରେ ଗରୀବ କେବେ ଉନ୍ନତ କରୁନାହାନ୍ତି ।"

କାର୍ଜିଘର ମା'ଙ୍କ କଥା ଆଁ କରି ଶୁଣୁଥିଲା ବାସନ୍ତୀ । କେତେ ଶିଆଣିଆ ସତେ ମା । ପାଠ ପଢ଼ିଛନ୍ତି । ବଡ଼ଘର ଝିଅ, କାର୍ଜିଘର ବୋହୁ । ହସିଦେଇ କହିଲା, "ବୁଝିଲ ମା, ତମେ ସିନା ପାଠୋଇ, ଆମେ କଣ ଏତେ ପାଠ ପଢିଚୁ କ ?" କାର୍ଜିଘର ମା କହିଲେ, ସବୁଲୋକ ଯଦ ସରକାରଙ୍କୁ ଠିକ୍ ସମୟରେ କର ଦେଉଥାନ୍ତେ ତ ସରକାର ସମସ୍ତଙ୍କ ପାଇଁ ସ୍କୁଲ କଲେଜ ଖୋଲିଥାନ୍ତେ, ନା ନାଇଁ । ସବୁ ତ ଟଙ୍କାକୁ ମାଡ଼ିବସିଛନ୍ତି, ଆଉ ଦେଶର କଣ ହଉଚ, ନ ହଉଛି କିଏ ଦେଖୁଛି ? ଏବେ ଗାଁରେ ଭଲ ସ୍କୁଲଟେ ହେଲେ ତୋ କୁନା କଣ ପାଠ ପଢ଼ନ୍ତାନି ? ବଡ଼ ହେଲେ ଗ୍ଗକରୀ ବାକରୀ କରନ୍ତା ନି ?"

ବାସନ୍ତୀ ମନକୁ କଥାଟା ପାଇଲା । ସତ କଥା ତ । ସରକାରଙ୍କ ପାଖରେ ଅଧିକ ଟଙ୍କାଥିଲେ ସବୁ ହୁଅନ୍ତା । କାର୍ଜିମା କହୁଥିଲେ, "ଟଙ୍କା ସବୁ ତ ଲୋକମାନେ ଲୁଚେଇ ଦେଇଛନ୍ତି । ଏବେ ସେଇଥିପାଇଁ ସରକାର ପୁରୁଣା ଟଙ୍କା ନେଇ ନୂଆ ନେବାକୁ କହୁଛନ୍ତି । ଯାହାପାଖରେ ଅଧିକ ଥିବ ଧରାପଡ଼ିଯିବ । ସେଥିପାଇଁ କଛି ଲୋକ କଣ କରୁଛନ୍ତି, ଅନ୍ୟମାନଙ୍କୁ ପଇସା ଦେଇ ତାଙ୍କ ଟଙ୍କାକୁ ବଦଳାଇବାକୁ

କହୁଛନ୍ତି । ନଜେ ଗଲେ ଧରାପଡ଼ିଯିବେ ନା ।" କାର୍ଜିମା'ଙ୍କ କଥା ସରିନଥିଲା, କିଏ ଗୋଟେ ଡାକିଲା ବୋଲି ସେ ଗ୍ଲଲିଗଲେ । ବାସନ୍ତୀ ମଧ୍ୟ ସେଠୁ ଉଠିଲା । ଧିରେ ଧିରେ ଘରକୁ ଗଲା ।

ସଞ୍ଜରେ ଗରା ଧରି ପୋଖରୀକୁ ପାଣିଧରିବାକୁ ବାହାରୁଥିଲା, ଗାଁ ମଣ୍ଡପପାଖରେ ସଭା ବସିଛି । ସବୁଠି ସେଇ ଟଙ୍କା ଅଦଳବଦଳ କଥା । ତା ପାଦ ଆଉ ଆଗକୁ ବଢ଼ିଲାନି । କୁନାବାପା ସହରକୁ ଯାଉଛି, ଆହୁରି ଫେରିନି, କାଲେ କିଏ ପୋଲିସରେ କହିଦେବକି ? ଧରାପଡ଼ିଗଲେ ତାର କଣ ହବ ? ଏଇୟା ଭାବି ଭାବି ତା ପାଦ ସେଇଠି ଅଟକି ଗଲା । ବଳିଆ ଦିନବେଳର ଖବର କାଗଜ ପଢ଼ି ଶୁଣାଉଥିଲା, ସମସ୍ତେ ଶୁଣୁଥିଲେ । ସେ କହୁଥିଲା କାଳେ ଟଙ୍କା ବଦଳାଇବା ପାଇଁ ଧାଡ଼ିରେ ଠିଆ ହୋଇଥିବା ବେଳେ ସତୁରି ପାଖାପାଖି ଲୋକ ମରିଗଲେଣି । ବିରୋଧୀ ଦଳମାନେ କାଳେ ଗଣ୍ଡଗୋଳ କରୁଛନ୍ତି, ଏ ସବୁ ପ୍ରହସନ ବନ୍ଦ କରି ବୋଲି କହି ଭାରତ ବନ୍ଦ କରିବେ ବୋଲି କହୁଛନ୍ତି । ଏ କଥା ଶୁଣିବାପରେ ବାସନ୍ତୀର ଛାତି ଭିତରଟା କଣ କଣ ହେଇଗଲା । ଦିଲ୍ଲୀଆଡ଼େ କାଳେ ଧାଡ଼ିରେ ଠିଆ ହୋଇଥିବା ଲୋକମାନଙ୍କ ଭିତରେ ଗଣ୍ଡଗୋଳ ହେଇ କିଏ ଗୋଟେ ଲୋକକୁ ମାଡ଼ ହେଇଛି, କୋଉଠି କିଏ କାହାକୁ ଗୁଳି ମାରିଦେଇଛି, ଏମିତି ସବୁ ଶୁଣି ଶୁଣି ବାସନ୍ତୀର ମୁହଁ ବୁଲେଇ ଦେଲା । ହୀନ ଗଉଡ଼ଘର ଦୁଆରେ ସେ ଲଥ କରି ବସିପଡ଼ିଲା ।

ଖବର କାଗଜ ପଢ଼ା ସରିଲା ବେଳକୁ କରଣ ଆଜ୍ଞା କହୁଥିଲେ, "ଏମିତ କାମ ଯାହା ଦ୍ୱାରା ଦେଶର ଉନ୍ନତ ହେବ । ଆମେ ସମସ୍ତେ ସହଯୋଗ କରିବାକୁ ପଡ଼ିବ । ଆରେ ଆଜ ସିନା ଟିକେ ଭିଡ଼ଗହଳି ହେବ । ଦିନେ ଦୁଇ ଦିନ ଅସୁବିଧା ହେବ । ହେଲେ ଚନ୍ଦ୍ରାକର । ଆମ ପିଲାମାନେ ଯେତେବେଳେ ବଡ଼ ହେବେ, ସେତେବେଳକୁ ଏ ଦେଶ ସୁନାର ଦେଶ ହେଇଯିବ । ଆମେ ଯଦି ସବୁ ଜାଣିଶୁଣି

ସରକାରଙ୍କ ବିରୋଧ କରିବା, ତା ହେଲେ ମନେ ରଖ ଆଉ ଶହେ ବର୍ଷ ପଳେଇଲେ ବି କିଛି ପରିବର୍ତ୍ତନ ହେବନାହିଁ । ଆମ ଗାଁରେ କେହି ବି ଏହାକୁ ସମର୍ଥନ କରିବେନି ।" ସମସ୍ତେ କରଣ ଆଜ୍ଞାଙ୍କ କଥାରେ ହଁ ଭରୁଥିଲେ । ଅନ୍ଧାର ବଢ଼ି ଆସୁଥିଲା । ପୋଖରୀ ତୁଠରୁ ଫେରୁଥିଲା ମାଳତୀ । ତା ସାଥୀରେ ଭରିଦେଇ ବାସନ୍ତୀ ଘରକୁ ଫେରିଆସିଲା ।

ରାତିରେ କୁନାବାପା ଆଉ କୁମାରୀ ଘରକୁ ଫେରିବା ବେଳକୁ ବାସନ୍ତୀ ମଝି ଅଗଣାରେ ମସିଣା ପାରିଦେଇ ଗଡ଼ିଛି । କୁନା ବାହାରେ ଖେଳୁଛି । କୁନାବାପାକୁ ଦେଖୁ ଦେଖୁ ବାସନ୍ତୀ କାନ୍ଦି ପକାଇଲା । କୁନାବାପା କିଛି ବୁଝିବାପୂର୍ବରୁ ତା ହାତକୁ ନେଇ କୁନାମୁଣ୍ଡରେ ରଖିଦେଇ କହିଲା, ରାଣ ଖାଇ କୁହ, ଯାହା କହିବି ମାନିବ । କୁନାବାପା କିଛି ବୁଝିବା ପୂର୍ବରୁ ବାସନ୍ତୀ କହିଲା, ତମେ ଆଉ ସେ ଧାଡ଼ିରେ ଯାଇ ଠିଆ ହବନି । ଆମକୁ ସେ ଟଙ୍କା ଦରକାର ନାହିଁ । କୁନାବାପା କିଛି କହିବା ପୂର୍ବରୁ ବାସନ୍ତୀ କହିଦେଇଥିଲା, ସେ ପାପ ଟଙ୍କା ଆଣିଲେ ସତ କହୁଛି ଯାଇ ପୋଖରୀରେ ଡେଇଁ ପଡ଼ିବି । ପୁରା ଗାଁ ଲୋକ ଯାହା ଭଲ ବୋଲି ଭାବିବେ ତମେ ବି ତାହା କରିବ । ଆମେ ଭୋକରେ ହେଲେସୁଧାରୁ ରହିବା, କିନ୍ତୁ ଆମ କୁନା କାଲି ଭୋକରେ ରହିବନି । ତମେ ସେ ଧାଡ଼ିରେ ଆଉ ଯାଇ ଠିଆ ହେବନି । ସାହୁକାରର କଳାଟଙ୍କାକୁ ଧଳା କରିବନି ।

କୁନାବାପା ବାସନ୍ତୀର ମୁଣ୍ଡକୁ ଆଉଁସିଦେଇ କହୁଥିଲା, ହଉ, ତୁ ଯାହା କହୁଛୁ ସେଇୟା । ଆଉ ଯିବିନି । କୁମାରୀ ଖନ୍ଦାଶାଳରେ ବସି ଚୁଲିରେ ନିଆଁ ଲଗାଉଥିଲା । ବାସନ୍ତୀ ଧାଇଁ ଯାଇ ଭାତହାଣ୍ଡିଟା ବସେଇଲା । ପିଣ୍ଡାରେ କୁନା ଖେଳୁଥିଲା, କୁନାବାପା ଆକାଶକୁ ଚାହିଁ ବସିଥିଲା ।

# ନାଗରିକ ସଂହିତା ଓ ଜାତୀୟ ସଂହତି



ଡା ସୌମ୍ୟ ରଞ୍ଜନ ମିଶ୍ର

ସୁଦର୍ଶନ ଏଥର ଦେଖାହେଲ୍‌ବେଳେ ଭାର ଖୁସି ଜଣାପଡୁଥିଲ୍ । କଛି ଗୋଟାଏ ଖବର ଅଛି, ଏ କଥା ମୁଁ ଅନୁମାନ କରନେଲ । ଗ୍ଁ ଦୁଇଟା ବରଦ କରଦେଇ ସେ ଆରମ୍ଭ କଲ୍ - ଯା ହେଉ, ଏଥର ସରକାର ଗୋଟାଏ କାମ ଏକଦମ୍ ଠିକ୍ କରଛନ୍ତି । ଏକଥା ବହୁତ ଆଗରୁ ହେବାର ଥିଲ୍ । ସମସ୍ତେ ଯଦ ଭାରତରେ ରହବା ତେବେ ସମସ୍ତଙ୍କ ପାଇଁ ଗୋଟାଏ ନୟମ ଲ୍ଗୁହେବା ଉଚତ । ସମସ୍ତେ ଏଥିରୁ ଲ୍ଭବାନ ହୋଇପାରବେ । ସେ କେଉଁକଥା କହୁଛ ମୁଁ ବୁଝିଗଲ ଆଉ ଟିକେ ମୁରୁକ ହସିଦେଲ । ମୋ ହସ ତା ମନରେ ଆଶଙ୍କା ଆଣିଦେଲ୍ । ସେ କହଲ୍ - ତୁମେ କଛି ଗୋଟେ କଥା ଭାବୁଛ ଭାଇନା ! ତୁମେ ତ ମୋ କଥାରେ ଏକମତ ହେବ ନଶ୍ଚୟ । ମୁଁ କହଲ, ସମସ୍ତଙ୍କ ପାଇଁ ଗୋଟିଏ ପ୍ରକାର ନୟମ ଲ୍ଗୁ ହୋଇପାରବ ନାହିଁ । ଯୁଗେ ଯୁଗେ ଏହା ହୋଇନାହିଁ । ଅସାମାଜକ, ଅଗଣତାନ୍ତ୍ରକ, ଅଣଭାରତୀୟ ଇତ୍ୟାଦ କେତେ କେତେ ବଶେଷଣ ମନେ ମନେ ମୋ ପ୍ରତ ପ୍ରୟୋଗ କରଗଲ୍ ପର ମୋତେ ଲ୍ଗିଲ୍, ମୁଁ କନ୍ତୁ ନର୍ବିକାର ଥିଲ । ଯାହା ସତ୍ୟ, ତାହା ସତ୍ୟ ।

ମୁଁ ପୁଣି ଆରମ୍ଭ କଲ, ଯଦ ଜଣେ ସରକାରୀ ଚାକରୀଆ ଗୋଟିଏ ପତ୍ନୀଥାଇ ଅନ୍ୟ ପତ୍ନୀ ଗ୍ରହଣ କରେ ତେବେ ତାକୁ ଚାକରୀରୁ ହାତ ଧୋଇବାକୁ ପଡ଼ିଥାଏ । କନ୍ତୁ ପତ୍ନୀ ଥାଉ ବା ନଥାଉ

ଏକାଧିକ ଯୌନସାଥୀ ରଖିଲେ ଏଥିରେ ସରକାରଙ୍କ କିଛି ଯାଏଆସେ ନାହିଁ । ହଁ, ଚାକିରୀରୁ ମନେ ପଡ଼ିଲା, ତୁ କାହିଁକି ସରକାରୀ ଚାକିରୀ କଲୁନାହିଁ କହ ? ତାକୁ ଦବାଇବାକୁ ଏତିକି କହି ତା ମୁହଁକୁ ଚାହିଁଲି । ମୋ ସହିତ ଆଖି ନ ମିଶାଇ ଦୀର୍ଘଶ୍ୱାସଟିଏ ଛାଡ଼ିଦେଇ କହିଲା - ସେ କଥା ଛାଡ଼ନ୍ତୁ ଭାଇନା । ଆମେ ତ ନିଆଁରେ ମୁତୁଛୁ । ଆମ ସାଧାରଣ ବର୍ଗଙ୍କ ସାଧାରଣ ପ୍ରତିଭାଧାରୀମାନଙ୍କ ପାଇଁ ସରକାରୀ ଚାକିରୀ ପାଇବା ବଡ଼ କଠିନ କଥା । ଯେଉଁମାନେ ପାଉଛନ୍ତି ସେମାନେ ଅସାଧାରଣ ପ୍ରତିଭାର ଅଧିକାରୀ ।

ଏତିକି ବେଳକୁ ଚା ଆସି ସାରିଥିଲା । ଚା ଗିଲାସରେ ଚୁମା ଦେଉ ଦେଉ ସେ କହିଲା - ଦେଖିବ ଭାଇନା, ସରକାର ଧିରେ ଧିରେ ସବୁ କିଛି କରିବେ । ଚାକିରୀବାକିରୀରୁ ବି ସଂରକ୍ଷଣ ଉଠେଇଦେବେ । ଆମ ଜୀବଦ୍ଦଶାରେ ଏ ସବୁ ଦେଖିପାରିବୁନି ଆମେ, ଆମ ଅନ୍ତେ କେଜାଣି କିଛି ହେବ - ଖାଲି ଏତିକି କହିଲି ମୁଁ । ଗମ୍ଭୀର ପରିବେଶକୁ ହାଲୁକା କରିବାକୁ କଥାର ମୋଡ଼ ବଦଳାଇଲି ମୁଁ । ଜାଣିଛୁ, ଏବେକାର ସରକାର ଏକ ସର୍ବେକ୍ଷଣ ଅନୁସାରେ ଗାଁ ଲୋକମାନେ ନିଜ ସ୍ୱାସ୍ଥ୍ୟପାଇଁ ଯେତିକି ଖର୍ଚ୍ଚ କରନ୍ତି, ମଦ ବିଡ଼ି, ସିଗାରେଟ୍ ଆଦି ନିଶାପାଇଁ ତାଠୁ ଛଅ ଗୁଣ ଅଧିକ ଖର୍ଚ୍ଚ କରନ୍ତି । ତଥାପି ସରକାର ଗ୍ରାମାଞ୍ଚଳ ଗରିବ ଲୋକଙ୍କ ପାଇଁ ଯୋଜନା ଉପରେ ଯୋଜନା କରିଚାଲିଛନ୍ତି । ଭାବିଥିଲି ମୋ କଥା ଶୁଣି ସୁଦର୍ଶନ ମୋତେ ସମ୍ମତି ଜଣାଇବ । କିନ୍ତୁ ସେ କହିଲା - ଗାଁରେ କିଛି ଲୋକଙ୍କ ଚଳିବା ଫର୍ଚ୍ଚ ହେଲାଣି ସିନା ଭାଇନା, ଅନେକ କିନ୍ତୁ ଏବେ ବି ଉତ୍କଟ ଦାରିଦ୍ର୍ୟରେ ସଢୁଛନ୍ତି । ସରକାରୀ ସୁବିଧା ସବୁ ସେମାନଙ୍କ ପାଖରେ ପହଞ୍ଚି ପାରୁନାହିଁ । ବାଟମାରଣା ହୋଇଯାଉଛି ।

ମୁଁ ଦେଖିଲି ସୁଦର୍ଶନ ଭିତରର ଏନ୍‌ଜିଓ ବ୍ୟକ୍ତିତ୍ୱଟା । ତାକୁ ଧିରେ ଧିରେ

କାବୁ କରିବାକୁ ବସିଲାଣି ।  କାଟପାଣି ଦେବାପାଇଁ କହିଲ, କହି ପାରିବୁ, ତୁ କାହିଁକି ୩୦ ପ୍ରତିଶତ ଆୟକର ଦେଲାବେଳକୁ ଦେଶର ଅନେକ ଲୋକ ଆଦୌ ଆୟକର ଦିଅନ୍ତି ନାହିଁ ? ସରକାର ଏଥିପାଇଁ କାହିଁକି କିଛି କରୁନାହାନ୍ତି ? ଅସଲ କଥା ହେଲା ଭୋଟ୍ ଗୁଳିଯିବା ଭୟରେ କୌଣସି ବି ରାଜନୈତିକ ଦଳ ଏଥିରେ ହସ୍ତକ୍ଷେପ କରିବାକୁ ସାହାସ କରନ୍ତି ନାହିଁ । ସୁଦର୍ଶନର ତୃତୀୟ ନୟନ ଖୋଲିଗଲାପରି ଲାଗିଲା ମୋତେ । କିଛି ନ କହି ଝଡ଼ପରି ବାହାରିଗଲା ସେ । ଗ୍ରୀ ପଇସା ଦେଉ ଦେଉ ତା ଯିବାବାଟକୁ ଗ୍ରହିଁ ରହିଥିଲି ମୁଁ ।

ମଧ୍ୟଖଣ୍ଡୀ, ଶ୍ରୀବଳଦେବ ଜୀଉ
କେନ୍ଦ୍ରାପଡ଼ା, ୭୫୪୨୧୨,
ଦୂରଭାଷ - ୯୮୫୩୧୧୭୭୨୦
ଇମେଲ୍ - dr.srmishra@gmail.com

# ହ୍ୱାଟ୍ସଆପ୍ ଉବାଚ



ଅରବନ୍ଦ ଆଗ୍ରର୍ଯ୍ୟ

ମୁଁ,... ହ୍ୱାଟ୍ସ୍ ଆପ୍ କହୁଛ ।

ମୋତେ ସମସ୍ତେ ଚହ୍ନଛନ୍ତ । ଆଉ ଚହ୍ନାପରଚୟ ଦେବା ଦରକାର ନାହିଁ । ଆଜକାଲ ସବୁ ମୋବାଇଲ୍ ଫୋନରେ ମୁଁ । ଆଣ୍ଡ୍ରଏଡ୍ ଫୋନ୍ ଆଉ ସେଥିରେ ମୁଁ ନଥାଏ ଏମିତ କେବେ ବ ହୋଇପାରେନ । ନରବଚ୍ଛିନ୍ନ ଭବରେ ମୁଁ କାର୍ଯ୍ୟକରେ । ବଶ୍ରାମ କଣ ତାହା ମୋ ଅଭଧାନରେ ନାହିଁ ।

ହଉ ଏଥର ମୋ କଥା ଶୁଣନ୍ତୁ । ଅସଂଖ୍ୟ ଭକ୍ତମୋର କନ୍ତୁ ମୁଁ ଯେଉଁ କେତେକ ଭକ୍ତଙ୍କୁ ଭଲପାଏ, ସେମାନଙ୍କ କଥା ହିଁ କହବ ।

ପ୍ରଥମେ ଗୋଟେ ଗୃପରୁ ଆରମ୍ଭ କରୁଛ । ଏଇଟା ଏମିତ ସେମିତ ଗୃପ୍ ନୁହେଁ । ବହୁତ ସ୍ପେଶାଲ୍ ଗୃପ୍ । ଫେସବୁକର ପୁରୁଣା ସାଙ୍ଗମାନଙ୍କୁ ନେଇ ଏଇ ଗୃପର ଆରମ୍ଭ । ବଭନ୍ନ ପ୍ରକାର ଭକ୍ତଙ୍କ ସମାଗମ ଏଠି । ପ୍ରଥମେ ମାତ୍ର ଗୃରଜଣଙ୍କୁ ନେଇ ଆରମ୍ଭ ହୋଇଥିଲା, ସେମାନେ ହେଲେ;

୧. ସନାତନ ବେହେରା, ପେଷାରେ ବ୍ୟବସାୟୀ, ବୟସ ୩୦ ପାଖାପାଖି, ବବାହତ, ଖୁସ୍ ମିଜାଜର ଲୋକ ।

୨. ଉମାପତ ସାହୁ, ସରକାରୀ ଗୃକରୀଆ, କ୍ଲାସ୍ ୱାନ୍ ରେଙ୍କ୍, ବୟସ ୨୮-୨୯ ହବ । ବୁଦ୍ଧିମାନ, ଅବବାହତ, ଟିକେ ସାଇଲେଣ୍ଟ ମାନେ

ରିଜର୍ଭ୍ ଟାଇପର ଲୋକ ।

୩. ବିଷ୍ଣୁ ପ୍ରସାଦ ବ୍ରହ୍ମ, ଇଞ୍ଜିନିୟରିଂ ଛାତ୍ର, ବୟସ ୨୩ । ଚୁଟ୍‌କୁଲା ଶୁଣାଇବାରେ ଓସ୍ତାଦ, ସଂଗୀତପ୍ରେମୀ ।

୪. ଭବାନୀ ଆଗ୍ରୱାଲ୍, ଗାଳ୍ପିକ, ବୟସ ୪୫ ପାଖାପାଖି, ସାଙ୍ଗ ବନେଇବାରେ ଓସ୍ତାଦ୍, ବିବାହିତ ।

ଗ୍ରୁପ ତିଆରି ହୋଇଗଲା ସତ କିନ୍ତୁ ସେମିତି କିଛି ଖାସ୍ କଥାବାର୍ତ୍ତା ହେଉନଥିଲା, କାଁ ଭାଁ କିଏ କେବେ ଗୁଡ୍ ମର୍ଣ୍ଣିଂ ବା ଗୁଡ୍ ଇଭିନିଂ ଟେ ପୋଷ୍ଟ କରୁଥିଲେ । ଆଉ ବେଳେ ବେଳେ ହସକଥା ବା ଭିଡ଼ିଓଟେ । ସବୁ ଅନ୍ୟ କୌଣସି ସୂତ୍ରରୁ ଉଦ୍ଧୃତ ବା ଭାଇରାଲ୍ ହୋଇଥିବା ଜିନିଷ ମାତ୍ର । କହିବା ଅନାବଶ୍ୟକ ଗ୍ରୁପ ଥିଲା ସମ୍ପୂର୍ଣ୍ଣ ନିରସ ଆଉ ନିସ୍ତେଜ । ହେଲେ ଦିନେ ଏଇ ଗ୍ରୁପର ଅବସ୍ଥା ପୁରା ବଦଳିଗଲା । ଯେଉଁଦିନ ଗାଳ୍ପିକ ଭବାନୀ ବାବୁ ନିଜର ଜଣେ ବାନ୍ଧବୀଙ୍କୁ ଏହି ଗ୍ରୁପରେ ଆଡ୍ କରିଦେଲେ । ସେହି ଭଦ୍ର ମହିଳାଙ୍କ ନାଁ ଥିଲା

୫. ରୂପା ଚକ୍ରବର୍ତ୍ତୀ, ପେଷାରେ ଡାକ୍ତର, ବୟସ କହିହେବନି । ପ୍ରୋଫାଇଲ୍‌ରେ ଫୋଟୋ ନଥିଲା, କିନ୍ତୁ କଥାରେ ମାନେ ଗପରେ କେହି ପାରିବେନି ତାଙ୍କୁ । ଭରି ହାଜର ଜବାବ ସ୍ତ୍ରୀଲୋକ ଜଣେ ।

ସିଏ ଆସିଲା ପରଠାରେ ଗ୍ରୁପ୍ ମେମ୍ବରଙ୍କ ସଂଖ୍ୟା ଧିରେ ଧିରେ ବଢ଼ିବାରେ ଲାଗିଲା । କେତେ ପୁରୁଷ ଓ ମହିଳା ଭକ୍ତ ଆସିଲେ ଗଲେ ଆଉ ହିସାବ ରଖିବା ସଂଭବ ହେଲାନି । ହେଲେ ସଦ୍ୟପ୍ରାପ୍ତ ସୂଚନା ଅନୁଯାୟୀ ସେହି ଗ୍ରୁପରେ ପ୍ରାୟ ଅର୍ଦ୍ଧଶତକ ସଦସ୍ୟ । ସମସ୍ତଙ୍କ ନାଁ ଏଠି ଆଉ କଣ ଲେଖିହେବ ? ଲେଖିଲେ ବି କଣ ଲାଭ, କିଏ ପଢ଼ିବ ? ହଉ, ଆବଶ୍ୟକ ହେଲେ ପରିଚୟ ଦେବି ନିଶ୍ଚୟ ।

ତାରିଖ : ଜାନୁଆରୀ ପ୍ରଥମ ୨୦୧୬

ରୂପା : ସମସ୍ତଙ୍କୁ ନବବର୍ଷର ଅଭିନନ୍ଦନ ।

ଭବାନୀ : ଆପଣଙ୍କୁ ମଧ୍ୟ ଅଭିନନ୍ଦନ ।

ରୂପା : ଧନ୍ୟବାଦ ।

ସନାତନ : ମେଡ଼ମ୍ । ହ୍ୟାପି ନ୍ୟୁ ଇୟର୍ । କେମିତ ଅଛନ୍ତି ?

ରୂପା : ଭଲ, ଆପଣ ?

ବଷ୍ଟୁ : ଭବାନୀ, ହ୍ୟାପି ନ୍ୟୁ ଇୟର୍... ମ୍ୟାଡ଼ମ୍, ଆପଣଙ୍କୁ ବି ।

ରୂପା : ଧନ୍ୟବାଦ ବଷ୍ଟୁବାବୁ ।

ସନାତନ : ଉମା, କୁଆଡ଼େ ଗଲୁ କି ? ଅନଲାଇନ୍ ହଉନୁ ?

ଭବାନୀ : ସେ ବିଜିଥିବ ।

ବଷ୍ଟୁ : ନାଇ ମ । ଏଇ ଟିକେ ଆଗରୁ ଅନଲାଇନ୍ ଥିଲା ।

ରୂପା : କେମିତ ଅଛନ୍ତି ସମସ୍ତେ ?

ଉମା : ଭଲ ଅଛି । ଆଉ ଆପଣଙ୍କ ହାଲଚାଲ କଣ ?

ଭବାନୀ : ହା... ହା... ହା... ଉମା କିଦ ଭିଙ୍ଗିଗଲା କରେ ?

ରୂପା : ହା... ହା... ହା...

ଏହାପରେ ଉମାପତ ସାହୁ ଓ ରୂପା ଚକ୍ରବର୍ତ୍ତୀ ନିଜ ନିଜ ଏକାଉଣ୍ଟରେ କଥା ହେଉଥିଲେ ।

ଉମା : କଣ ରୂପା ତମ ଦେହ ଭଲ ଅଛି ତ ?

ରୂପା : କାଇଁ, କଣ ହେଲା କି ?

ଉମା : ବହୁତ ହ୍ୟାପି ନ୍ୟୁ ଇୟର୍ କହୁଛ ? ସମସ୍ତଙ୍କୁ... କଣ କିଛି ସ୍ପେଶାଲ ଚାଲିଛି କି ?

ରୂପା : ତୁମର ସବୁବେଳେ ସନ୍ଦେହ । ସମସ୍ତେ ମୋର ଫ୍ରେଣ୍ଡ, ଜଷ୍ଟ ଫ୍ରେଣ୍ଡ ।

ସେପଟେ ବିଷ୍ଣୁ ପ୍ରସାଦ ବ୍ରହ୍ମ ମଧ୍ୟ ରୂପା ଚକ୍ରବର୍ତ୍ତୀଙ୍କୁ ନିଜ ଆକାଉଣ୍ଟରେ ମେସେଜ୍ କରୁଥିଲେ ।

ବିଷ୍ଣୁ : କ୍ୟା ହେ ରୂପା, ଆଜ୍ ବହୁତ୍ ଖୁସ୍ ?

ରୂପା : କୁଛ୍ ନହିଁ, ବସ୍ ଏସେ ହି ।

ବିଷ୍ଣୁ : କବ୍ ମୁଲ୍ଲାକାତ୍ ହୋଗି ?

ରୂପା : ସିର୍ଫ୍ ଗ୍ରିଟ୍ । ମୁଲ୍ଲାକାତ୍ ନାହିଁ । ସମଝେ ?

ମୁଁ ସବୁ ଦେଖୁଥିଲି । କି ଦୁନିଆଁ ହେଲାି । ପୁଣି ଆରଥରକୁ ଆଉ କିଛି କହିବି । ମନଦେଇ ଶୁଣିବ ।

# ସତୀଙ୍କ ନାମରେ ଶକ୍ତିପୀଠ



ବାଲ୍ମୀକି ନାୟକ

ସତୀଙ୍କ ନାମରେ ଶକ୍ତିପୀଠ ମାନଙ୍କ ରହସ୍ୟ

ହନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ମହାଦେବ ଶିବଙ୍କ ପତ୍ନୀ ପାର୍ବତୀଙ୍କ ଅନେକ ନାମ ଉଲ୍ଲେଖ ଅଛି । ଦୁର୍ଗା, କାଳୀ ଓ ସତୀ ବ କୁହାଯାଏ । ସତୀଙ୍କ ନାମରେ ଭାରତ ଓ ସିଂହଳ ଦେଶରେ ଅନେକ ଶକ୍ତିପୀଠ ନର୍ମାଣ କରାଯାଇଛି । ଶକ୍ତିପୀଠ ସଂପର୍କରେ ବଭିନ୍ନ ଗ୍ରନ୍ଥରେ ବଭିନ୍ନ ପ୍ରକାର ମତ ରହଛି । କେଉଁଠି ଲେଖା ଅଛି ୧୦୮ ଗୋଟି ଶକ୍ତିପୀଠ, କେଉଁଠି ଲେଖାଅଛି ୫୧ଟି ଶକ୍ତିପୀଠ । ଆଦ ଶଙ୍କରାଚାର୍ଯ୍ୟଙ୍କ ମତରେ ୧୮ଗୋଟି ଶକ୍ତିପୀଠ ରହଛି । ସମସ୍ତ ଶକ୍ତିପୀଠର ତାଲକା ବ ରହଛି । ଏଇଠି ତାଲକା ଦେଲେ ପ୍ରବନ୍ଧଟି ଲମ୍ବା ହୋଇଯିବ । ଆମେ ଏହାର ଆବଶ୍ୟକତା ବ ଅନୁଭବ କରୁନାହୁଁ । ଶକ୍ତିପୀଠ ନର୍ମାଣର ପ୍ରଚଳତ କାହାଣୀ ନମ୍ନମତେ ବର୍ଣ୍ଣନା କରାଯାଇଛି ।

ଦକ୍ଷପ୍ରଜାପତ ଗୋଟିଏ ଯଜ୍ଞ ଅନୁଷ୍ଠିତ କରଥିଲେ । ସେ ତାଙ୍କର ଝିଅ ପାର୍ବତୀ ଓ ଜାମାତା ଶିବଙ୍କୁ ବାଦ ଦେଇ ଅନ୍ୟ ସମସ୍ତ ଝିଅ, ଜାମାତା ଓ ଦେବତା ମାନଙ୍କୁ ଯଜ୍ଞରେ ଯୋଗ ଦେବାପାଇଁ ନମନ୍ତ୍ରଣ କରଥିଲେ । ପାର୍ବତୀ ନାରଦଙ୍କ ଠାରୁ ଏହ ଖବର ଶୁଣିବା ପରେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏହାର କାରଣ ଜାଣିବାପାଇଁ ସେ ବାପଘରକୁ ଯିବାପାଇଁ ସ୍ୱାମୀଙ୍କ ଅନୁମତ ଲୋଡ଼ିଥିଲେ । ଶିବ କହଥିଲେ - ବନା ନମନ୍ତ୍ରଣରେ ଯିବା ଅନୁଚତ ହେବ । ପାର୍ବତୀ କନ୍ତୁ

ଅଭିମାନବଶ ହୋଇ ବାପଘରକୁ ଚାଲିଯାଇଥିଲେ । ପାର୍ବତୀଙ୍କୁ ଦେଖି ଦକ୍ଷପ୍ରଜାପତି ଆଦର ସମ୍ମାନ କରିବା ପରିବର୍ତ୍ତେ ଶିବପାର୍ବତୀଙ୍କୁ ନେଇ ଅନେକ ଅପମାନଜନକ କଥା କହିଥିଲେ, ଏଥିରେ କ୍ଷୁବ୍ଧ ହୋଇ ଦେବୀ ପାର୍ବତୀ ଯଜ୍ଞ କୁଣ୍ଡରେ ପ୍ରାଣତ୍ୟାଗ ଦେଇଥିଲେ । ମହାଦେବ ଶିବ ଏହି କଥା ଯୋଗବଳରେ ଜାଣିପାରି ନିଜ କ୍ରୋଧ ସଂବରଣ କରିପାରିଲେ ନାହିଁ । ସେ ତୁରନ୍ତ ଯଜ୍ଞସ୍ଥଳରେ ପହଞ୍ଚି ଦେବୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ ଯଜ୍ଞ ଅଗ୍ନିରୁ ଉଦ୍ଧାର କରି ନିଜ କାନ୍ଧରେ ରଖି ପ୍ରଚଣ୍ଡ ତାଳରେ ତାଣ୍ଡବ ନୃତ୍ୟ ଆରମ୍ଭ କରିଦେଲେ । ତାଙ୍କର ତାଣ୍ଡବ ନୃତ୍ୟରେ ବ୍ରହ୍ମାଣ୍ଡ ଥରହର ହେଲା । ଦେବତାମାନେ ପ୍ରମାଦ ଗଣି, ବିଷ୍ଣୁଙ୍କୁ ଏହାର ସମାଧାନ ହେତୁ ନିବେଦନ କଲେ । ବିଷ୍ଣୁ ତୁରନ୍ତ ନିଜର ସୁଦର୍ଶନ ଚକ୍ରଦ୍ୱାରା ଶିବଙ୍କ କାନ୍ଧରେ ଥିବା ପାର୍ବତୀଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲେ । ଶିବ ତାଣ୍ଡବ ନୃତ୍ୟକରି ବ୍ରହ୍ମାଣ୍ଡ ସାରା ଘୁରିବୁଲୁଥିବା ହେତୁ ପାର୍ବତୀଙ୍କ ଶରୀରର ଖଣ୍ଡ ଗୁଡ଼ିକ ବିଭିନ୍ନ ସ୍ଥାନରେ ପଡ଼ିଲା । କୁହାଯାଏ, ଯେଉଁଠି ତାଙ୍କ ଶରୀରର ଅଙ୍ଗ ପଡ଼ିଲା, ସେଇଠି ଶକ୍ତିପୀଠମାନ ନିର୍ମାଣ କରାଯାଇଛି । ଦେବୀଙ୍କ ଶରୀର କେତେ ଖଣ୍ଡ ହୋଇଥିଲା ତାହାର ସଠିକ ବିବରଣୀ କୌଣସି ଗ୍ରନ୍ଥରେ ନାହିଁ ।

ଆଦି ଶଙ୍କରାଚାର୍ଯ୍ୟଙ୍କ ମତରେ ୧୮ଗୋଟି ଶକ୍ତିପୀଠର ତାଲିକାରେ ଓଡ଼ିଶାର ମାତ୍ର ଗୋଟିଏ ଅଛି । ଯାଜପୁରରେ ଦେବୀଙ୍କ ନାଭୀ ପଡ଼ିଥିବାରୁ ବିରଜା ନାମରେ ଶକ୍ତିପୀଠ ନିର୍ମାଣ ହୋଇଛି । ଓଡିଶାରେ ପ୍ରଚଳିତ ଶିବପୁରାଣ ଅନୁସାରେ ବିଷ୍ଣୁପାର୍ବତୀଙ୍କ ଶରୀରକୁ ମାତ୍ର ଆଠ ଖଣ୍ଡରେ କାଟି ଦେଇଥିଲେ । ସେହି ଆଠ ଖଣ୍ଡ କେବଳ ଓଡ଼ିଶାର ବିଭିନ୍ନ ସ୍ଥାନରେ ପଡ଼ିଥିଲା । ତେଣୁ ଓଡ଼ିଶାରେ ଆଠଗୋଟି ଶକ୍ତିପୀଠ ତିଆରି ହୋଇଛି । ବାଣପୁର ଭଗବତୀ, କାକଟପୁର ମଙ୍ଗଳା, ଝଙ୍କଡ଼ରେ ଶାରଳା, ପୁରୀରେ ବିମଳା, ଯାଜପୁରରେ ବିରଜା, ବାଙ୍କୀରେ ଚର୍ଚ୍ଚିକା, ତାଳଚେରରେ ହିଙ୍ଗୁଳା ଓ ସମ୍ବଲପୁରରେ ସମଲେଇ ।

ଅନ୍ୟ କେତେ ପୁରାଣ ଦେବୀ ଭାଗବତ ଓ କାଳିକା ପୁରାଣ ଅନୁସାରେ ଭାରତରେ ମାତ୍ର ଚାରିଗୋଟି ଶକ୍ତିପୀଠ ଅଛି, ୧. ପୁରୀରେ ଦେବୀଙ୍କ ପାଦ ପଡ଼ିଥିବାରୁ ବିମଳା, ୨. ଦେବୀଙ୍କ ସ୍ତନଖଣ୍ଡରୁ ଗଞ୍ଜାମରେ ତାରାତାରିଣୀ, ୩. ଆସାମରେ ଦେବୀଙ୍କ ଯୋନୀପଡ଼ିଥିବାରୁ କାମାକ୍ଷା ଏବଂ ୪. ଦେବୀଙ୍କ ମୁଖ ଭାଗ ପଡ଼ି କଲିକତାରେ ଦକ୍ଷିଣ କାଳୀ ଶକ୍ତିପୀଠ ତିଆରି ହୋଇଛି ।

ଉପରୋକ୍ତ ସମସ୍ତ ଶକ୍ତିପୀଠ ମଧ୍ୟରୁ ଆସାମ ପ୍ରଦେଶରେ ଗୌହାଟୀ ନିକଟବର୍ତ୍ତୀ ନୀଳାଚଳ ପର୍ବତସ୍ଥିତ କାମାକ୍ଷା ଶକ୍ତିପୀଠ ଉପରେ ଚର୍ଚ୍ଚା କରାଯାଉ । ଏଇଠି ସତୀଙ୍କ ଜରାୟୁ ଓ ଯୋନୀ ପଡ଼ିଥିବା କଥା ଶାସ୍ତ୍ରରେ ଉଲ୍ଲେଖ ଅଛି । ଏହି ଶକ୍ତିପୀଠକୁ ତନ୍ତ୍ରପୀଠ ମଧ୍ୟ କୁହାଯାଏ । ଏହି ମନ୍ଦିରକୁ କୁଚବିହାରର ରାଜା ନରନାରାୟଣ ଦେବ ୧୬୬୫ ମସିହାରେ ନିର୍ମାଣ କରାଇଥିଲେ । ଭାରତର ବିଭିନ୍ନ ପ୍ରଦେଶରୁ ତାନ୍ତ୍ରୀକମାନେ ତନ୍ତ୍ରମନ୍ତ୍ର ସାଧନା ପାଇଁ ଏହି ମନ୍ଦିରରେ ଭିଡ଼ ଲଗାଇଥାନ୍ତି । କୁହାଯାଏ, ଆଷାଢ଼ ମାସରେ ଦେବୀଙ୍କ ଋତୁସ୍ରାବ ହୁଏ । ଏହି ସମୟରେ ତିନିଦିନ ପାଇଁ ମନ୍ଦିରର ମୁଖ୍ୟ କବାଟ ବନ୍ଦରହେ । ଏହି ସମୟରେ ପାହାଡ଼ ନିକଟରେ ପ୍ରବାହିତ ବ୍ରହ୍ମପୁତ୍ର ନଦୀର କିଛି ଅଂଶରେ ଲାଲପାଣି ଦେଖାଯାଏ । କୁହାଯାଏ, ଏହାର ଅର୍ଥ ହେଉଛି ଦେବୀଙ୍କ ଯୋନୀରୁ ରକ୍ତ ନିର୍ଗତ ହେଉଛି । ଏହାର ପରୀକ୍ଷଣ କରି କେହି ବିଜ୍ଞାନ ସମ୍ମତ ତଥ୍ୟ ଦେଇନାହାନ୍ତି । କେତେକ ବୁଦ୍ଧିଜୀବି କୁହନ୍ତି - ଭକ୍ତମାନଙ୍କୁ ପ୍ରଭାବିତ କରିବାପାଇଁ ମନ୍ଦିରର ପୂଜକମାନେ ସିନ୍ଦୁରଘୋଳ ଭକ୍ତଙ୍କ ଅଗୋଚରରେ ପାଣିରେ ଢାଳିଦିଅନ୍ତି । ଚତୁର୍ଥଦିନ କବାଟ ଖୋଲାଯାଏ । ଏହି ସମୟରେ ପଶୁପକ୍ଷୀଙ୍କ ବଳି ଦିଆଯାଏ । ପୂଜକମାନେ ଖଣ୍ଡ ଖଣ୍ଡ କନାକୁ ସେଇ ରକ୍ତରେ ଭିଜେଇ ଭକ୍ତମାନଙ୍କୁ ବାଣ୍ଟି ଦିଅନ୍ତି । କୁହାଯାଏ, ଏହି ରକ୍ତ ଦେବୀଙ୍କ ଶରୀରରୁ ନିର୍ଗତ ହୋଇଛି ।

ମନ୍ଦିର ଭିତରେ କାମାକ୍ଷାଦେବୀଙ୍କ ମୂର୍ତ୍ତିନାହିଁ । ଗର୍ଭଗୃହ ଭିତରେ ଯୋନୀ

ଆକାରର ଏକ ପ୍ରସ୍ତର ଖୋଦିତ ସାଙ୍କେତିକ ଚିହ୍ନ ରହିଛି । ସେଥିରେ ଲାଲ ରଙ୍ଗର ସିନ୍ଦୁର ଲିପାଯାଇଛି । ମନ୍ଦିର ବେଢ଼ାରେ କିଛି ଦେବୀଙ୍କ ଅବତାର ମୂର୍ତ୍ତି ରହିଛି । ଯଥା; ଧୂମାବତୀ, ମାତଙ୍ଗୀ, ବାଗୋଲା, ତାରା, କମଳା, ଭୈରବୀ, ଛିନ୍ନମସ୍ତା, ଭୁବନେଶ୍ୱରୀ, ତ୍ରିପୁରାସୁନ୍ଦରୀ ଇତ୍ୟାଦି ।

ପ୍ରତିଦିନ ହଜାର ହଜାର ନରନାରୀ ନିଜ ନିଜର ବିଶ୍ୱାସ ଆଧାରରେ ମାନସିକ ପୂରଣ ପାଇଁ ପ୍ରତ୍ୟେକ ଶକ୍ତିପୀଠକୁ ପୂଜାର୍ଚ୍ଚନା ପାଇଁ ଦୌଡ଼ି ଯାଉଛନ୍ତି । ସେମାନଙ୍କ ଭିତରେ କେବଳ ଅଶିକ୍ଷିତ ନୁହନ୍ତି, ଶିକ୍ଷିତ ଓ ଉଚ୍ଚଶିକ୍ଷିତ ବର୍ଗ ବି ଯୋଗ ଦେଇଥାନ୍ତି । ଶକ୍ତିପୀଠ ମାନଙ୍କରେ ପୂଜା ଅର୍ଚ୍ଚନା କରି ଏବଂ କାମାକ୍ଷା ଦେବୀଙ୍କ ରକ୍ତଭିଜା କନା ଖଣ୍ଡିକ ନେଇ କିଏ କେଉଁଠି ରଖି ପୂଜା କରନ୍ତି, ସେକଥା ସେମାନେ ହିଁ କହିପାରିବେ । କିଏ କଣ ପାଉଛନ୍ତି ? ସେ କଥା ବି ସେମାନେ ହିଁ କହିପାରିବେ ।

ଏଇଠି କିଛି ହେତୁବାଦୀ ପ୍ରଶ୍ନର ତର୍କ ସଂଗତ ଉତ୍ତର ଯଦି ଭକ୍ତମାନେ ଦେଇପାରିବେ, ତେବେ ଅନେକ ରହସ୍ୟର ପର୍ଦ୍ଦାଫାସ ହୋଇପାରିବ ।

୧. ପାର୍ବତୀଙ୍କ ଭଳି ଜଣେ ଶକ୍ତିଶାଳୀ ଦେବୀଙ୍କ ଶରୀରକୁ ଅଗ୍ନିଦେବତା ଦଗ୍ଧ କରିବାକୁ ସାହାସ କଲେ କିପରି ?

୨. ମହାଦେବ ଶିବ ଓ ବିଷ୍ଣୁଙ୍କ ଭଳି ଦେବତା ପାର୍ବତୀଙ୍କୁ ଜୀବନଦାନ ନ ଦେଇ ଏତେ ଆଣ୍ଡି କରିଲେ କାହିଁକି ?

୩. ଶିବ ସାରା ବ୍ରହ୍ମାଣ୍ଡରେ ଘୁରି ଘୁରି ତାଣ୍ଡବ ନୃତ୍ୟ କରୁଥିବା ବେଳେ ପାର୍ବତୀଙ୍କ ଶରୀରର ଖଣ୍ଡସବୁ ଭାରତ ଦେଶରେ ହିଁ କାହିଁକି ପଡ଼ିଲା ?

୪. ପାର୍ବତୀଙ୍କ ଶରୀର କେତେ ଖଣ୍ଡ ହୋଇଥିଲା ସେ ସମ୍ପର୍କରେ ଏକମତ ପ୍ରକାଶ ପାଉନାହିଁ କାହିଁକି ?

୫. ଓଡ଼ିଆ ମାନଙ୍କ ବିଶ୍ୱାସ ଅନୁସାରେ ଦେବୀଙ୍କ ଶରୀର ଯଦି ମାତ୍ର ଆଠଖଣ୍ଡ ହୋଇପଡ଼ିଥିଲା, ତେବେ ଶିବକଣ ଓଡ଼ିଶାରେ ହିଁ ତାଣ୍ଡବ କରିଥିଲେ ?

ଏଇଠି ଆମେ ଆଉ ଏକ ସଂବେଦନଶୀଳ ପ୍ରଶ୍ନ ଉପରେ ବିଗ୍ଚର କରିବା । ସତୀ ବା ପାର୍ବତୀ ଯଦି ସମସ୍ତଙ୍କର ମାତା, ତେବେ ତାଙ୍କ ଯୋନୀକୁ ସାର୍ବଜନୀକ ଭାବରେ ପ୍ରଦର୍ଶନ କରିବା କୌଣସି ସଭ୍ୟ ସମାଜର ନୈତିକ ଆଚରଣ ହୋଇପାରିବ କି ? ସୁଧିପାଠକେ ବିଗ୍ଚର କରନ୍ତୁ ।

# ଅବଶ୍ୱସନୀୟ ପୌରଣିକ ଆବଷ୍କାର



ବାଲ୍ମୀକି ନାୟକ

ପୃଥିବୀରେ ମାନବ ସଭ୍ୟତାର ପ୍ରଗତ ଘଟିଛି, ବଜ୍ଞାନର ବକାଶ ଯୋଗୁଁ । ବଜ୍ଞାନର ବକାଶ ଗୋଟିଏ ଦନରେ କମ୍ବା ଗୋଟିଏ ଯୁଗରେ ଘଟିନାହିଁ । ଏଥିପାଇଁ ହଜାର ହଜାର ବର୍ଷ ଲାଗିଛି । ପ୍ରକୃତର ରହସ୍ୟ ଜାଣିବା ପାଇଁ ପ୍ରତ୍ୟେକ ଯୁଗରେ ବୈଜ୍ଞାନକ ଦୃଷ୍ଟିକୋଣ ରଖୁଥିବା କେତେକ ମହାମନଷୀ, ମନନ, ଚନ୍ତନ, ଅନୁସନ୍ଧାନ, ଅଧ୍ୟୟନ ଏବଂ ଗବେଷଣାଦ୍ୱାରା ସତ୍ୟର ସନ୍ଧାନ କର ମଣିଷ ସମାଜକୁ ତଥ୍ୟ ସମର୍ପଣ କରଛନ୍ତି । ସେମାନଙ୍କ ଦ୍ୱାରା ପ୍ରମାଣିତ ତଥ୍ୟ ଗୁଡ଼ିକୁ ବାରମ୍ବାର ପରୀକ୍ଷା କର ସତ୍ୟବୋଲ ହୃଦବୋଧ ହେବାପରେ ହିଁ ମାନବ ସମାଜ ବଶ୍ୱାସ କରୁଛି ଏବଂ ନଜ ଜୀବନଶୈଳୀରେ ପ୍ରୟୋଗ କରୁଛି । ଆଜ ପୃଥିବୀର ପ୍ରତ୍ୟେକ କୋଣରେ ଥିବା ପ୍ରାଥମିକ ବଦ୍ୟାଳୟର ଛାତ୍ରଛାତ୍ରୀମାନେ ମଧ୍ୟ ବଶ୍ୱାସ କରୁନାହାନ୍ତି ଯେ, 'ପୃଥିବୀ ସ୍ଥିର ଓ ସୂର୍ଯ୍ୟ ତା' ଚାରପାଖରେ ଘୁରୁଛି ।' କାରଣ ଏହା ବାଇବେଲରେ ଲେଖା ହୋଇଛି ।

ବଦେଶମାନଙ୍କରେ ବଜ୍ଞାନ ଓ ପ୍ରଯୁକ୍ତି ବଦ୍ୟାଦ୍ୱାରା ଉଦ୍ଭାବନ କରାଯାଇଥିବା ପ୍ରତ୍ୟେକଟି ଭୌତକ ଉପକରଣ ଆଜ ପ୍ରତ୍ୟେକ ଦେଶର ନାଗରକ ଉପଯୋଗକର ଜୀବନକୁ ସହଜ ଓ ସରଳ କରପାରଛନ୍ତି । ଦୁଃଖର ବଷୟ ଯେ ଏ ପର୍ଯ୍ୟନ୍ତ ଭାରତରେ ସେମିତ କଛି ଉଲ୍ଲେଖନୀୟ ନୂତନବସ୍ତୁ ଆବଷ୍କାର ବା ଉଦ୍ଭାବନ ହୋଇନାହିଁ, ଯାହା ସବୁଦେଶରେ ସ୍ୱୀକୃତ ପାଇଛି । ଆମର ଏହ ଅପାରଗତାକୁ

ଲୁଚେଇବା ପାଇଁ ଏବଂ ହୀନମନ୍ୟତାରୁ ରକ୍ଷାପାଇବା ପାଇଁ ଭାରତୀୟ ଶାସ୍ତ୍ର ପଣ୍ଡିତ, ଧର୍ମଗୁରୁ ଓ ତାଙ୍କର ଭକ୍ତମାନେ ଯୋରସୋରରେ ପ୍ରଚାର କରୁଛନ୍ତି - 'ଆମ ଦେଶରେ ପ୍ରଥମେ ବିଜ୍ଞାନର ବିକାଶ ହୋଇଥିଲା ।' ପ୍ରମାଣ କଅଣ ? ପଚାରିଲେ କୁହନ୍ତି, ଧର୍ମଶାସ୍ତ୍ର ପଢ଼ି ଜାଣିପାରିବ । ଧର୍ମଶାସ୍ତ୍ରରୁ ଉଦ୍ଧୃତ କରି ସେମାନେ ଯେଉଁ ସବୁ କାହାଣୀର ଉଦାହରଣ ଦେଇ ବିଜ୍ଞାନ ଦ୍ୱାରା ଆବିଷ୍କାର ହୋଇଛି ବୋଲି ଦାବୀ କରୁଛନ୍ତି, ଆମେ ଏଇଠି ସେଥିରୁ କିଛି ଉଦାହରଣ ଉପରେ ବିଚାର କରିବା ।

୧. ସର୍ବପ୍ରଥମେ ଭାରତୀୟ ମୁନୀଋଷିମାନେ ଏକ ବା ଦୁଇନୁହେଁ ୩୩ କୋଟି ଦେବୀ ଦେବତାଙ୍କୁ ଖୋଜି ଆବିଷ୍କାର କରିଥିଲେ । ସେତେବେଳେ ହୁଏତ ଭାରତର ଜନସଂଖ୍ୟା ଏତେ ନଥିଲା ।

୨. ହିନ୍ଦୁ ଧର୍ମଗୁରୁମାନେ ବର୍ଣ୍ଣବ୍ୟବସ୍ଥା ସୃଷ୍ଟିକରି ଭାରତୀୟ ମଣିଷ ସମାଜକୁ ପ୍ରାୟ ୬୭୪୩ ଗୋଟି ଜାତିରେ ବିଭକ୍ତ କରିଦେଇଛନ୍ତି । ସେମାନଙ୍କ ନିୟମ ଅନୁସାରେ ନିମ୍ନଜାତିର ମଣିଷକୁ ଛୁଇଁଲେ କିମ୍ବା ତା'ର ଛାଇ ପଡ଼ିଗଲେ ଉଚ୍ଚଜାତିର ମଣିଷ ଭ୍ରଷ୍ଟ ହୋଇଯାଉଥିଲା । ସେ ନିଜକୁ ପବିତ୍ର କରିବା ପାଇଁ ଗାଇ ପରି ପଶୁର ମୂତ୍ରକୁ ନିଜ ଉପରେ ଛିଞ୍ଚି ହେଉଥିଲା କିମ୍ବା ଗୋମୂତ୍ର ସେବନ କରୁଥିଲା । ନିମ୍ନ ଜାତିର ମଣିଷ ଅପେକ୍ଷା ଗାଇ, କୁକୁର, ବିରାଡ଼ି, ବାନର ଆଦି ପଶୁ ବେଶୀ ପବିତ୍ର ବୋଲି ସେମାନେ ଭାବନ୍ତି ।

୩. ପୃଥିବୀର ଜ୍ୟୋତିର୍ବିଦ ବୈଜ୍ଞାନିକମାନେ ଆଜି ପର୍ଯ୍ୟନ୍ତ ଅନ୍ୟ କୌଣସି ଗ୍ରହରେ ଜୀବସତ୍ତା ଅଛିକି ନାହିଁ ଖୋଜି ପାରୁନାହାନ୍ତି, କିନ୍ତୁ ହିନ୍ଦୁ ଧର୍ମଶାସ୍ତ୍ରରେ ତିନିଲୋକ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଥିବା କଥା ବର୍ଣ୍ଣନା କରାଯାଇଛି । ସ୍ୱର୍ଗ କେବଳ ଦେବୀଦେବତାଙ୍କ ପାଇଁ ସଂରକ୍ଷିତ । ପୂଣ୍ୟ ଅର୍ଜନ କରିଥିବା କେତେକ ମଣିଷ ବି ସ୍ୱର୍ଗକୁ ଯାଇ ବାସ କରୁଥିବା କଥା କୁହାଯାଉଛି । ମର୍ତ୍ତ୍ୟରେ ମଣିଷ ମାନଙ୍କର ସହ ଦେବୀ, ଦେବତା ଓ ଅସୁରମାନେ ମଧ୍ୟ ବାସ କରିଥାନ୍ତି । ପାତାଳରେ ମଣିଷଙ୍କ

ବ୍ୟତୀତ ଦେବ ଓ ଦାନବ ରହନ୍ତି ।

୪. ବିଦେଶୀ ବୈଜ୍ଞାନିକମାନେ ଶତ୍ରୁ ଦମନ ପାଇଁ ଗୋଟିଏରୁ ବଡ଼ କ୍ଷେପଣାସ୍ତ୍ର ବା ମାରଣାସ୍ତ୍ର ଉଦ୍ଭାବନ କରିଛନ୍ତି । ବଡ଼ ଅସ୍ତ୍ର ହେଉଛି ପରମାଣୁ ବୋମା, ହାଇଡ୍ରୋଜେନ୍ ବୋମା ଇତ୍ୟାଦି । ଆମ ଦେଶରେ ବହୁତ ପୂର୍ବରୁ ବ୍ରହ୍ମାସ୍ତ୍ର ଥିଲା ଯାହାଦ୍ୱାରା କେବଳ ପୃଥିବୀକୁ ନୁହେଁ ତିନିଲୋକ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳକୁ ଧ୍ୱଂସ କରିବା ଭଳି କ୍ଷମତା ଥିଲା । ତଥାପି ଆମ ଦେଶରୁ ଶତ୍ରୁମାନଙ୍କୁ ଘଉଡ଼େଇବା ପାଇଁ ବ୍ରହ୍ମାସ୍ତ୍ର ପ୍ରୟୋଗ ହୋଇପାରିଲା ନାହିଁ । ଆମେ ଦୁଇହଜାରରୁ ଅଧିକ ବର୍ଷ ଶତ୍ରୁମାନଙ୍କ ଗୋଲାମ ହୋଇ ରହିଥିଲୁ । ବ୍ରହ୍ମାସ୍ତ୍ର କେଉଁଠି ଅଛି ?

୫. ଆଜି ପର୍ଯ୍ୟନ୍ତ ଚିକିତ୍ସା ବିଜ୍ଞାନ ଯଥେଷ୍ଟ ପ୍ରଗତି କରିଥିଲେ ମଧ୍ୟ ମଣିଷକୁ ଅମରତ୍ୱ ପ୍ରଦାନ କରିଯାଇ ପାରୁନାହିଁ । କିନ୍ତୁ ପୁରାଣ ବର୍ଣ୍ଣିତ ଅଶ୍ୱତ୍ଥାମା ଭଳି ଅନେକ ଶୂରବୀରଙ୍କୁ ଅମରତ୍ୱ ପ୍ରାପ୍ତ ହୋଇଥିଲା । ସେହିଭଳି ଅମରତ୍ୱ ପାଇଥିବା ଅଶ୍ୱତ୍ଥାମା ଆମ ଦେଶରେ କେବେ ଦେଖିବାକୁ ମିଳୁନାହାନ୍ତି କାହିଁକି ?

୬. ଦୂରଭାଷ (ଟେଲିଫୋନ୍) ଓ ଦୂରଦର୍ଶନ (ଟେଲିଭିଜନ୍) ବିଦେଶ ଭୂଇଁରେ ହିଁ ଉଦ୍ଭାବନ ହେଲା । ବହୁତ ଦିନପରେ ସେ ସବୁ ଭାରତକୁ ଆସିଲା । ଆମ ଦେଶରେ ମହାଭାରତ ଯୁଗରେ ସଂଜୟଙ୍କ ଦିବ୍ୟଦୃଷ୍ଟି ଯୋଗୁଁ ବହୁ ଦୂରରେ ଚାଲିଥିବା ଯୁଦ୍ଧର ଦୃଶ୍ୟ ଧୃତରାଷ୍ଟ୍ରଙ୍କୁ ଶୁଣାଇପାରୁଥିଲେ । ପୁରାଣ ଯୁଗରେ ଦେବୀ ଦେବତାମାନେ ଅଦୃଶ୍ୟ ରହି ଆକାଶବାଣୀ ଦ୍ୱାରା ନିଜର ନିର୍ଦ୍ଦେଶ ବା ଆଦେଶ ଭାରତୀୟ ମାନଙ୍କୁ ଶୁଣାଉଥିଲେ । ଏବେ ସେଭଳି ଆକାଶବାଣୀ ଶୁଣାଯାଉନି କାହିଁକି ?

୭. ଆଜି ପର୍ଯ୍ୟନ୍ତ କୌଣସି ବୈଜ୍ଞାନିକ ସୂର୍ଯ୍ୟପାଖକୁ ଯିବା ତ ଦୂରର କଥା ସୌରମଣ୍ଡଳକୁ ଛୁଇଁବାର କଳ୍ପନା ବି କରି ପାରୁନାହାନ୍ତି । ପୁରାଣ ଯୁଗରେ

ମହାଶକ୍ତିଶାଳୀ ହନୁମାନ ସୂର୍ଯ୍ୟଙ୍କୁ ଏକ ସାମାନ୍ୟ ଫଳ ଭାବି ପାଟିରେ ପୁରେଇ ଦେଇଥିଲେ । ଏବେ ବି ତ ଆମ ଦେଶରେ ହନୁମାନଙ୍କୁ ସଙ୍କଟମୋଚନ ଦେବତା ରୂପେ ପୂଜା କରୁଛୁ । ଗ୍ରୀଷ୍ମ ଦିନେ ଆମେ କେତେ କଷ୍ଟ ପାଉଛୁ । ହଜାର ହଜାର ପ୍ରାଣୀ ଗ୍ରୀଷ୍ମ ତାପ ଯୋଗୁଁ ପ୍ରାଣ ହରାଉଛନ୍ତି କାହିଁକି ? ବୀର ହନୁମାନ ସୂର୍ଯ୍ୟଙ୍କ ତାପକୁ ନିୟନ୍ତ୍ରଣ କରିପାରୁନାହାନ୍ତି କାହିଁକି ?

୮. ରାଇଟ୍ ବ୍ରଦର୍ସ୍ ଅନେକ ଦିନ ଓଲଟାପାଲଟା ଗବେଷଣା କରି ଶେଷରେ ମଣିଷକୁ ନେଇ ପକ୍ଷୀ ଭଳି ଆକାଶରେ ଉଡ଼ିପାରିବା ଯନ୍ତ୍ରଟିଏ ଉଦ୍ଭାବନ କରିଲେ । ନାମ ଦେଲେ ଏରୋପ୍ଲେନ୍ ବା ଉଡ଼ାଜାହାଜ । ଆମର ପୌରାଣିକ ଗ୍ରନ୍ଥ ରାମାୟଣରେ ରାବଣ ନାମକ ଏକ ତଥାକଥିତ ଅସୁର ଉଡ଼ନ୍ତା ଯନ୍ତ୍ରନିର୍ମାଣ କରିପାରିଥିଲା । ତା'ର ନାମ ଥିଲା ପୁଷ୍ପକ ବିମାନ । ପୁଷ୍ପକ ବିମାନର ଗଠନ ପଦ୍ଧତି, ସେଥିରେ ବ୍ୟବହାର ହେଉଥିବା ଇନ୍ଧନ, ତା'ର ବେହ ଆଦି ସମ୍ପର୍କରେ ରାମାୟଣରେ ବି ତଥ୍ୟ ଉପଲବ୍ଧ ନାହିଁ । ରାଇଟ୍ ବ୍ରଦର୍ଶଙ୍କ ପରେ ଉଡ଼ାଜାହାଜର ନିର୍ମାଣ ଶୈଳୀରେ ଏତେ ପ୍ରଗତି ହେଉଛି ଯେ, ତାହା ମାନବ ସମାଜ ପାଇଁ କେତେ ଉପଯୋଗୀ କହିବା ଆବଶ୍ୟକ ନାହିଁ ।

୯. ଆଜିର ଚିକିତ୍ସା ବିଜ୍ଞାନୀ ଡାକ୍ତରମାନେ ରୋଗଗ୍ରସ୍ତ ମଣିଷମାନଙ୍କୁ ଆରୋଗ୍ୟ କରିବାପାଇଁ ବହୁତ ପ୍ରକାର ଔଷଧ ଓ ଚିକିତ୍ସା ପଦ୍ଧତି ଉଦ୍ଭାବନ କରି ସାରିଲେଣି, ତଥାପି ମୃତ୍ୟୁବରଣ କରିବାପରେ କୌଣସି ଔଷଧ ପ୍ରୟୋଗ କରି ବଞ୍ଚେଇଦେଲା ଭଳି ଚିକିତ୍ସା ବ୍ୟବସ୍ଥା ପାଇନାହାନ୍ତି । ରାମାୟଣ ଯୁଗରେ ସଞ୍ଜିବନୀ ଲତା ଖୁଆଇ ମୃତବ୍ୟକ୍ତିକୁ ବଞ୍ଚେଇ ଦିଆଯାଉଥିଲା । ଆଜି ସେହି ସଞ୍ଜିବନୀ ଲତା କେଉଁଠି ଅଛି କେହି ଜାଣନ୍ତି ନାହିଁ ।

୧୦. ପାଣି, ମେଘ ଓ ଜଳଚକ୍ର ବିଷୟରେ ବିଶେଷ ବିବରଣୀ ଆମ ଦେଶର ଯେ କୌଣସି ଛାତ୍ର କହିଦେଇ ପାରିବ । ପୁରାଣ ଯୁଗରେ ଯେଉଁଠି ପାଣି ଦରକାର

ହେଉଥିଲା, ସେ ଯୁଗର ଶୁରବୀରମାନେ ଆକାଶକୁ ତୀର ମାରିଦେଲେ, ଆକାଶ ଫାଟିଯାଇ ପାଣି ଗଳିପଡୁଥିଲା କିମ୍ବା ବର୍ଷା ବିଭାଗର ଦେବତା ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଦେଲେ ବର୍ଷା କରିଦେଉଥିଲେ । ଆଜିକାଲି ଯେତେ ପୂଜା କଲେ ବି ବର୍ଷା ହେଉନି କାହିଁକି ?

୧୧. ଯେଉଁ ଶିଶୁ, ଗୋଟିଏ ଶରୀର ଦୁଇଟି ମୁଣ୍ଡ, ଦୁଇଟି ଶରୀର ଗୋଟିଏ ମୁଣ୍ଡ କିମ୍ବା ଦୁଇରୁ ଅଧିକ ହାତ ବା ଗୋଡ଼ ଥାଇ ଜନ୍ମ ହୁଅନ୍ତି, ସେମାନଙ୍କୁ ସାଧାରଣ ଭାଷାରେ ଭିନ୍ନକ୍ଷମ ବା ଅପଙ୍ଗ ଶିଶୁ କୁହାଯାଏ । ସେମାନଙ୍କୁ ସାଧାରଣ ମଣିଷ ଭଳି ମରାମତି କରିଦେବା ଶକ୍ତି କୌଣସି ଦେବୀ ଦେବତାଙ୍କ ନଥାଏ । ବରଂ ମଣିଷମାନେ ହିଁ ଚିକିତ୍ସା ଶାସ୍ତ୍ର ଅନୁସାରେ ଅସ୍ତ୍ରୋପଚାର କରି ଅନେକ କ୍ଷେତ୍ରରେ ସାଧାରଣ ସ୍ତରକୁ ଆଣିପାରୁଛନ୍ତି । ପୁରାଣ ଯୁଗରେ ବ୍ରହ୍ମାଙ୍କର ଚାରିଗୋଟି ମୁଣ୍ଡ, ରାବଣର ଦଶଗୋଟି ମୁଣ୍ଡ, ଦେବୀଦେବତାଙ୍କ ଚାରି, ଆଠ, ଦଶ, ସହସ୍ର ଭୂଜ ଥିବା କଥା ବର୍ଣ୍ଣନା କରାଯାଉଛି । ମଣିଷ ବେକରେ ହାତୀମୁଣ୍ଡ, ମାଛ ଶରୀରରେ ମାନବ କନ୍ୟାର ମୁଣ୍ଡ ରୋପଣ କରିବା ବହୁତ ସହଜ ଥିଲା । ଆଜି ସେହି ବିଦ୍ୟା କାମ କରୁନି କାହିଁକି ?

୧୨. ପଶୁମାନଙ୍କ ପ୍ରକୃତି, ପ୍ରବୃତ୍ତି ଉପରେ ଅଧ୍ୟୟନ ଓ ଗବେଷଣା କରି ପ୍ରାଚୀନ କାଳରୁ କିଛି ପଶୁପକ୍ଷୀଙ୍କୁ ମଣିଷ ନିଜର ନିର୍ଦ୍ଦେଶ ଅନୁସାରେ ବ୍ୟବହାର କରିବାକୁ ସକ୍ଷମ ହୋଇଛି । ପାଳିତ ଓ ପ୍ରଶିକ୍ଷିତ ପଶୁପକ୍ଷୀ କେବଳ ସଙ୍କେତ ବୁଝୁନାହାନ୍ତି, ବରଂ ମଣିଷର ଭାଷାର ଅର୍ଥ ମଧ୍ୟ ବୁଝିପାରୁଛନ୍ତି । ଏହା ସତ୍ତ୍ୱେ ମଣିଷର ଭାଷାକୁ ନିଜ କଣ୍ଠରେ ଅବିକଳ ଉଚ୍ଚାରଣ କରିପାରନ୍ତି ନାହିଁ । ପୁରାଣ ଯୁଗରେ ଅନେକ ପଶୁପକ୍ଷୀ ମଣିଷମାନଙ୍କ ସହ ସ୍ପଷ୍ଟ ଭାବେ କଥୋପକଥନ କରିପାରୁଥିଲେ ।

୧୩. ବିଦେଶୀ ବୈଜ୍ଞାନିକମାନେ, ଗବେଷଣା କରି ପ୍ରମାଣିତ କରିସାରିଲେଣି

ଯେ ପ୍ରତ୍ୟେକ ପ୍ରାଣୀର କ୍ଲୋନ୍ କରାଯାଇପାରିବ । ଗତ କିଛି ବର୍ଷ ପୂର୍ବେ ଗୋଟିଏ ମେଣ୍ଢାକୁ କ୍ଲୋନ୍ କରାଯାଇ ଜନ୍ମ କରାଯାଇଥିଲା । ମଣିଷର ବି କ୍ଲୋନ୍ ସମ୍ଭବ ବୋଲି ବୈଜ୍ଞାନିକ ମାନେ କହୁଛନ୍ତି । ପୁରାଣ ଯୁଗରେ ମଣିଷ କ୍ଲୋନ୍ ପାଇଁ ଏତେ ପାଠ ଆବଶ୍ୟକ ପଡୁନଥିଲା । ମଣିଷ ରକ୍ତ ଭୂଇଁରେ ପଡ଼ିବାପରେ ନୂଆ ମଣିଷଟିଏ ଉଠି ଠିଆ ହୋଇପଡୁଥିଲା । ରକ୍ତବୀର୍ଯ୍ୟ ଉପାଖ୍ୟାନ ସେହି କଥା କହୁଛି ।

୧୪. ସ୍ତ୍ରୀ ଓ ପୁରୁଷଙ୍କ ଯୌନସଂସର୍ଗରୁ ସନ୍ତାନ ପ୍ରାପ୍ତି ହେବା ଏକ ପ୍ରାକୃତିକ ସତ୍ୟ । ଆଜି ବୈଜ୍ଞାନିକମାନେ ସ୍ତ୍ରୀର ଡିମ୍ବାଣୁ ଓ ପୁରୁଷର ଶୁକ୍ରାଣୁକୁ ଗବେଷଣାଗାରରେ ସମ୍ମିଳିତ କରାଇ ନୂଆ ଶିଶୁକୁ ଜନ୍ମ କରିବା ପଦ୍ଧତିରେ ପାରଙ୍ଗମ ହେଲେଣି । ଏହା ହେଉଛି ଆଧୁନିକ ଚିକିତ୍ସା ବିଜ୍ଞାନର ଏକ ଅଭୂତପୂର୍ବ ଉପଲବ୍ଧି । ପୁରାଣ ଯୁଗରେ ଶରୀରର ଝାଳରୁ, ରକ୍ତ ବିନ୍ଦୁରୁ, ସ୍ତ୍ରୀମାନେ ଖୀରଖାଇ, ପୁରୁଷର ବୀର୍ଯ୍ୟକୁ ମୁହଁରେ ଖାଇ ସନ୍ତାନ ଜନ୍ମ କରୁଥିଲେ । ଏପରିକି ପଶୁସହ ମଣିଷ ସଂଭୋଗକରି ମଣିଷ ସନ୍ତାନ ଜନ୍ମ ହେବାକଥା ଦେଖାଯାଏ ।

୧୫. ଆଜିର ଯୁଗରେ ଉଡ଼ାଜାହାଜରେ ବସି ହଜାର ହଜାର ମାଇଲ୍‌ଦୂରକୁ ଅତି କମ ସମୟରେ ଯାଇ ହେଉଛି । ପୁରାଣଯୁଗରେ ପଶୁମାନେ କୌଣସି ଯାନର ସାହାଯ୍ୟ ନ ନେଇ ପକ୍ଷ ନଥାଇ ସୁଦ୍ଧା ଆକାଶରେ ଉଡ଼ିପାରୁଥିଲେ ।

ଉପରୋକ୍ତ ସମସ୍ତ ଉଦାହରଣରୁ ସୁଧିପାଠକେ ବୁଝିପାରିବେ ଯେ କାହାଣୀ ବା ତଥ୍ୟ ଗୁଡ଼ିକ କେତେଦୂର ଯୁକ୍ତିଯୁକ୍ତ ଓ ବିଜ୍ଞାନ ସମ୍ମତ ? ବର୍ତ୍ତମାନ ନାସାର କିଛି ବୈଜ୍ଞାନିକ ଭାରତୀୟ ଧର୍ମଗ୍ରନ୍ଥର ପ୍ରଚାରକୁ ପ୍ରତିବାଦ କରି କହିଲେଣି - ଧର୍ମଶାସ୍ତ୍ରରେ ଯାହା ସବୁ ଲେଖା ଅଛି, ତାହା ଯଦି ସତ୍ୟ ବୋଲି ବିଶ୍ୱାସ କରୁଛ, ତେବେ ଦୁନିଆ ଆଗରେ ପ୍ରମାଣ କରି ଦେଖାଅ । ଯଦି ପାରିବନି ତେବେ ଅବୈଜ୍ଞାନିକ ତଥ୍ୟକୁ ପ୍ରଚାର କରିବା ବନ୍ଦ କର । ସତ କଥା । ମିଛରେ ଧେଣ୍ଡୁରା ପିଟିଲେ ଲୋକହସା ହେବା ସାର ହେବ ।

# ଗଞ୍ଜାମ କବତାଘର ଉତ୍ସବ ୨୦୧୬

ବ୍ରହ୍ମପୁର, ୮/୧୦ : ଗଞ୍ଜାମର କବତାଘର ଅନୁଷ୍ଠାନ ଆନୁକୂଲ୍ୟରେ ସାହତ୍ୟ ଉତ୍ସବ ୨୦୧୬ ବଡ଼ ଆଡ଼ମ୍ବର ସହକାରେ ନବୀନ ଭବନ ବ୍ରହ୍ମପୁର ଠାରେ ପାଳନ କରଯାଇଛ । ଅନୁଷ୍ଠାନର ସମ୍ପାଦକ ଶ୍ରୀ ଭଗିରଥୀ ବେହେରଙ୍କ ଆଭମୁଖ୍ୟ, ବକ୍ତବ୍ୟ ଓ ଅତଥି ପରଚୟ ପ୍ରଦାନ ପରେ ଗଞ୍ଜାମ ଜଲ୍ଲା ଶିକ୍ଷାଧିକାରୀ ଶ୍ରୀ ସନାତନ ପଣ୍ଡା ମୁଖ୍ୟ ଅତଥି ଭବରେ କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରଥିଲେ ଏବଂ ସାହତ୍ୟ ଓ ଶିକ୍ଷା କେମିତ ଜୀବନକୁ ପ୍ରଭବତ କରେ ତା ଉପରେ ମନ୍ତବ୍ୟ ରଖିଥିଲେ । ପ୍ରଥମ ଅଧିବେଶନରେ ଓଡ଼ିଶା ସାହତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ଲେଖିକା ଶ୍ରୀମତ ମମତାମୟୀ ଚୌଧୁରୀ ନଜର ସଂଭଷଣରେ ସାହତ୍ୟ ପ୍ରତ ଗଞ୍ଜାମର ଅବଦାନକୁ ମନେ ପକାଇଥିଲେ ଏବଂ ବ୍ରହ୍ମପୁର ବଶ୍ୱବଦ୍ୟାଳୟର ପ୍ରଫେସର ଡ: ଦାଶରଥୀ ଭୂୟାଁ ସାହତ୍ୟ ଓ ସମାଜ ଉପରେ ମୁଖ୍ୟବକ୍ତା ଭବରେ ନଜ ମନ୍ତବ୍ୟ ରଖିଥିଲେ । ଜ୍ଞାନ ବକାଶ ଜୁନୟର କଲେଜର ଅଧକ୍ଷ ଶ୍ରୀ ସନତ



କୁମାର ବେହେରା ସମ୍ମାନିତ ଅତିଥି ଭାବରେ ଯୋଗଦେଇଥିଲେ । ଏହି ପର୍ଯ୍ୟାୟରେ ଅନୁଷ୍ଠାନର ସାହିତ୍ୟ ମୁଖପତ୍ର ଭଗିରଥୀ - କବିତାର ଗଙ୍ଗା ଉନ୍ମୋଚନ ହେବା ସହ ଭଗିରଥୀ ବେହେରାଙ୍କ ଉପନ୍ୟାସ ମାନବ - ଏକ ଆଦର୍ଶ ଶିକ୍ଷକ ଲୋକାର୍ପଣ ହୋଇଥିଲା । କେନ୍ଦ୍ରାପଡ଼ାର ପ୍ରଖ୍ୟାତ କବି ନୃସିଂହ ତରାଇଙ୍କୁ ରାଜ୍ୟସ୍ତରୀୟ ଶ୍ରେଷ୍ଠ କବି ସମ୍ମାନ, ଚକଟିର ନାରୀକବି ବିଦ୍ୟୁତପ୍ରଭା ବେହେରାଙ୍କୁ ଜିଲ୍ଲାସ୍ତରୀୟ ଶ୍ରେଷ୍ଠ କବି ସମ୍ମାନ ଦେବାସହ ରାଜ୍ୟସ୍ତରୀୟ ଯୁବସମ୍ପାଦକ ସମ୍ମାନ ଅୟମାରମ୍ଭ




ପତ୍ରିକାର ସମ୍ପାଦକ ଅବିନାଶ କୁମାର ସାହୁଙ୍କୁ ଦିଆଯାଇଥିଲା । ଶେଷରେ ପତ୍ରିକାର ସହ ସମ୍ପାଦକ ଅମିତାଭ ସାହୁ ଧନ୍ୟବାଦ ଅର୍ପଣ କରିଥିଲେ ।

କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଯୁବ ପୁରସ୍କାରପ୍ରାପ୍ତ ଗାଳ୍ପିକ ସୁଜିତ କୁମାର ପଣ୍ଡା ଦ୍ୱିତୀୟ ଅଧିବେଶନରେ ମୁଖ୍ୟବକ୍ତାଭାବରେ ଯୋଗ ଦେଇ କବିତା ଓ ଗଳ୍ପର ଦାର୍ଶନିକ ତତ୍ତ୍ୱକୁ ବୁଝାଇ ଶ୍ରୋତାଗଣଙ୍କୁ ମୁଗ୍ଧ କରିଥିବା ସମୟରେ ସମ୍ମାନିତ ଅତିଥି, ନବୀନ ପତ୍ରିକାର ସମ୍ପାଦକ ରବି ରଥ ସାହିତ୍ୟ ପତ୍ରିକାର ଅବଦାନ ବିଷୟରେ ନିଜର ବକ୍ତବ୍ୟ ରଖିଥିଲେ । ଏ ଅଧିବେଶନରେ ମଞ୍ଜିନ କୁମାର

ବେହେରାଙ୍କ କବିତା ସଂକଳନ ଆରମ୍ଭ ଓ ଶେଷର ଦୋଛକରେ ଏବଂ କୈଳାଶ ବେହେରାଙ୍କ ସଂକଳନ କିରଣ - କୁସୁମ କବିତାର ଉନ୍ମୋଚନ ହୋଇଥିଲା । ଶହେରୁ ଅଧିକ କବିଙ୍କର ଉପସ୍ଥିତିରେ ହୋଇଥିବା କବିତା ପାଠୋତ୍ସବକୁ କବି ନୀଳକଣ୍ଠ ସାହୁ ଏବଂ ସୁଶାନ୍ତ କୁମାର ପଟ୍ଟନାୟକ ସଂଯୋଜନା କରିଥିଲେ । ଦ୍ୱିତୀୟ ଅଧିବେଶନକୁ ପତ୍ରକାର ସମ୍ପାଦିକା ଜୟନ୍ତୀ ବେହେରା ପରିଚାଳନା କରିବା ସହ ସମ୍ପୂର୍ଣ୍ଣ ଉତ୍ସବକୁ ଅନୁଷ୍ଠାନର ପ୍ରତିଷ୍ଠାତା ଡା ରାଜେନ୍ଦ୍ର କୁମାର ବେହେରା ପୌରହିତ୍ୟ କରିଥିଲେ । ଏହି ଉତ୍ସବକୁ ଆୟୋଜନ କରିବାରେ ବିଶିଷ୍ଟ କବି ଓ ଶିଳ୍ପୀ ଶ୍ରୀ ନରେଶ କୁମାର ବେହେରାଙ୍କ ସମେତ ଅନୁପ କୁମାର ନାୟକ, ଲକ୍ଷ୍ମୀ ଚରଣ ବେହେରା, ମଞ୍ଜନ କୁମାର ବେହେରା, ଭାଗିରଥୀ ପଣ୍ଡା, ସୁଦାମ ପାଣିଗ୍ରାହୀ ଆଦି ସଦସ୍ୟ ସାହାଯ୍ୟ କରିଥିଲେ ।

ଆହ୍ୱାନର ଆଗାମୀ ସଂସ୍କରଣ ଜାନୁଆରୀ ମାସରେ ପ୍ରକାଶିତ ହେବ । ନିଜ ଦ୍ୱାରା ଲିଖିତ କବିତା ଓ କାହାଣୀ ଶୀଘ୍ର ଆମ ନିକଟକୁ ପଠାନ୍ତୁ ।

ଆପଣଙ୍କ ଲିଖିତ କବିତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତିହାସ, ଗବେଷଣା, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ପଠାଇ ପାରିବେ ।

ଆମ ଇ-ମେଲ୍ ଠିକଣା :

# aahwaan@gmail.com

<u>ଚିଠି ମାଧ୍ୟମରେ ଲେଖା ପ୍ରେରଣ କରିବା ଠିକଣା</u>


## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବୀମାନଗର, ୨ୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ : ୯୦୪୦୯୮୫୪୬୩ / ୭୦୦୮୫୬୭୦୮୫

# ବିଶେଷ ସୂଚନା

ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।

ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ । ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ । ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।

ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।

ଲେଖକ ଲେଖିକାମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇ ପାରିବେ । ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବା ପରେ ସ୍କାନ୍ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରିବେଶ ପ୍ରଦୁଷଣ ବିରୋଧ କରୁ ।

ଆହ୍ୱାନ ଇ-ପତ୍ରିକାରେ ଲେଖା ପ୍ରକାଶିତ କରିବାପାଇଁ ଯଦି ଆପଣ ଇଚ୍ଛୁକ ତେବେ ନିଜ

ଲିଖିତ କୃତିକୁ ଆପଣ ଆମ ନିକଟକୁ ପଠାନ୍ତୁ । ଯେହେତୁ ଏହି ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭିପାଏ ତେଣୁ ଏହି ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ଲେଖା ପଠାଇ ପାରିବେ ନାହିଁ, ତେବେ ଆପଣ ନିଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନିର୍ମଳ ହସ୍ତାକ୍ଷରରେ ଲେଖି ଆମ ନିକଟକୁ ନିମ୍ନ ଠିକଣାରେ ପଠାଇ ପାରିବେ ।

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ବୀମା ନଗର - ୨ୟ ଗଳି

ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦

ଓଡ଼ିଶା, ଫୋନ୍: ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦

ଯଦି ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା ପଠାଇବାକୁ ଚାହାନ୍ତି ତେବେ ନିଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନିକୋଡ୍ ଫଣ୍ଟରେ ଟାଇପ୍ କରିବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍‌ସ୍‌ଲିଟେରେସନ୍) କରି Microsoft Word Document ରେ ଆମ ନିକଟକୁ ପଠାନ୍ତୁ, କିମ୍ବା ଲେଖାକୁ ସ୍କାନ୍ କରି ଜେପିଇଜି ଫର୍ମାଟରେ ଇମେଲ୍ Attachment କରି ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା-ସମ୍ପାଦକ, 'ଆହ୍ୱାନ'

## ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ

ଯଦି ଏହି ସଂସ୍କରଣରେ କୌଣସି ତ୍ରୁଟିଥାଏ, ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।

ଆହ୍ୱାନ ଇପତ୍ରିକା ଏବଂ ଆହ୍ୱାନ ଓଡ଼ିଆ ପରିବାରର ହ୍ୱାଟ୍ସଆପ୍ ଗ୍ରୁପର ସଦସ୍ୟ ହେବାପାଇଁ ଆମ ହ୍ୱାଟ୍ସଆପ୍ ନମ୍ବରକୁ ନିଜ ମୋବାଇଲରେ ସ୍ଥାପିତ (Save) କରନ୍ତୁ । ଏବଂ ଆମକୁ ସନ୍ଦେଶ (Message) ଦିଅନ୍ତୁ ।

ଆମ ହ୍ୱାଟ୍ସଆପ୍ ଗ୍ରୁପ୍ର ନମ୍ବର ହେଉଛି :

# 9040985463